# ମୋର ବନ୍ଧୁ

# ଶ୍ରୀ ଲିକୀ



ଜେ. ବି. ଏସ୍. ହାଲ୍‌ଡେନ

# ମୋର ବନ୍ଧୁ ଶ୍ରୀ ଲିକୀ

ଜେ. ବି. ଏସ୍. ହାଲ୍‌ଡେନ

ଅନୁବାଦ

ଜଗନ୍ନାଥ ମହାନ୍ତି




ବିଜ୍ଞାନ ପ୍ରସାର

*ପ୍ରକାଶକ:*
**ବିଜ୍ଞାନ ପ୍ରସାର**
ସି-୨୪, କୁତବ୍ ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ନୂଆଦିଲ୍ଲୀ ୧୧୦ ୦୧୬
(ପଞ୍ଜୀକୃତ କାର୍ଯ୍ୟାଳୟ: ଟେକ୍‌ନୋଲଜି ଭବନ, ନୂଆଦିଲ୍ଲୀ ୧୧୦ ୦୧୬)
*ଫୋନ୍:* ୬୯୬୭୫୩୨, ୬୯୬୫୯୮୦, ୬୮୬୪୧୫୭, ଫ୍ୟାକ୍ସ: ୬୯୬୫୯୮୬
*ଇ-ମେଲ୍:* *vigyan@hub.nic.in* ଓ *vigyanp@vsnl.net.in*
*ଇଣ୍ଟରନେଟ୍:* http://www.vigyanprasar.com
http://vigyanprasar.allindia.com

*ଲେଖକ:* ଜେ· ବି· ଏସ୍· ହାଲ୍‌ଡେନ
*ଓଡ଼ିଆ ଅନୁବାଦ:* ଅଧ୍ୟାପକ ଜଗନ୍ନାଥ ମହାନ୍ତି
*ସଂପାଦନା:* ଡକ୍‌ଟର ନିଖିଳ ମୋହନ ପଟ୍ଟନାୟକ
*ଚିତ୍ର:* ମୂଳ ପ୍ରକାଶନ ଆଧାରିତ
*ଅକ୍ଷର ଓ ଅଙ୍ଗସଜ୍ଜା:* ସୃଜନିକା, ଭୁବନେଶ୍ୱର ୭୫୧ ୦୩୦
*ମୁଦ୍ରଣ:* ଶୋଭନ, ଭୁବନେଶ୍ୱର ୭୫୧ ୦୧୩
*ଓଡ଼ିଆ ସଂସ୍କରଣ:* ଫେବୃଆରୀ ୨୦୦୨

*Published by:*
Vigyan Prasar
C-24, Qutab Institutional Area
New Delhi 110 016
(Regd. office: Technology Bhavan, New Delhi 110 016)
*Phones:* 6967532, 6965980, 6864157 Fax 6965986
*E-mail:* vigyan@hub.nic.in & vigyanp@vsnl.net.in
*Internet:* http://www.vigyanprasar.com
http://vigyanprasar.allindia.com

*Author:* J. B. S. Haldane
*Oriya translation:* Prof. Jagannath Mohanty
*Editor:* Dr. Nikhil Mohan Pattnaik
*Illustrations:* adapted from the original
*DTP:* Srujanika, Bhubaneswar 751 030
*Printing:* Shovan, Bhubaneswar 751 013
*First Oriya Edition:* February 2002

ISBN: 81-7480-082-4

ଟ୪୦.୦୦ Rs.40.00

# ସୂଚୀପତ୍ର

# ବିଜ୍ଞାନ ପ୍ରସାର

## ଏକ ପରିଚିତି

ବିଜ୍ଞାନ ପ୍ରସାର (ବିପ୍ର) ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ବିଭାଗ ଦ୍ୱାରା ୧୯୮୯ ମସିହାରେ ଏକ ସ୍ୱୟଂଶାସିତ ପଞ୍ଜିକୃତ ସମାଜ ଭାବରେ ପ୍ରତିଷ୍ଠିତ ହୋଇଥିଲା । ବିଜ୍ଞାନକୁ ଲୋକପ୍ରିୟ କରାଇବା ପାଇଁ ବଡ଼ ବଡ଼ କାର୍ଯ୍ୟକ୍ରମ ହାତକୁ ନେବା ଏହାର ମୂଳ ଲକ୍ଷ ଥିଲା । ଏହାର ପ୍ରଧାନ ଲକ୍ଷଗୁଡ଼ିକର ସାରାଂଶ ହେଉଛି -

ବିଜ୍ଞାନକୁ ଲୋକପ୍ରିୟ କରାଇବା, ଜନସାଧାରଣଙ୍କ ମଧ୍ୟରେ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ଘଟାଇବା ଏବଂ ସମାଜର ସବୁସ୍ତରରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ସଂପର୍କରେ ଜ୍ଞାନ, ସଚେତନତା ଓ ଆଗ୍ରହ ବଢ଼ାଇବା ପାଇଁ ସାହାଯ୍ୟ, ସହଯୋଗ ଓ ଦିଗ୍‌ଦର୍ଶନ ଯୋଗାଇବା ଓ ସେହି ସବୁ ଉଦ୍ୟମ ଭିତରେ ସଂଯୋଜନା କରିବା,

ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସମ୍ପର୍କିତ ସୂଚନାର ଫଳପ୍ରଦ ପ୍ରସାର ଓ ବିନିମୟ ପାଇଁ ବିଭିନ୍ନ ବୈଜ୍ଞାନିକ ସଂଗଠନ ଓ ପ୍ରତିଷ୍ଠାନ, ଶିକ୍ଷାନୁଷ୍ଠାନ, ଶୈକ୍ଷିକ ପ୍ରତିଷ୍ଠାନ, ପରୀକ୍ଷାଗାର, ସଂଗ୍ରହାଳୟ, ଶିଳ୍ପ, ବାଣିଜ୍ୟ ଓ ଅନ୍ୟାନ୍ୟ ସଂସ୍ଥା ମଧ୍ୟରେ ନିରବଛିନ୍ନ ଯୋଗାଯୋଗ ଓ ସଂପର୍କର ପ୍ରତିଷ୍ଠା କରିବା,

ବିଜ୍ଞାନର ଅମୂର୍ତ୍ତ ଧାରଣା ଓ ପ୍ରୟୋଗ ବିଷୟରେ ସାଧାରଣ ଲୋକଙ୍କୁ ସରଳ ଭାବରେ ବୁଝାଇବା ପାଇଁ ଶ୍ରାବ୍ୟ, ଦୃଶ୍ୟ, ଶ୍ରାବ୍ୟଦୃଶ୍ୟ ଓ ମୁଦ୍ରିତ ସାମଗ୍ରୀ ଏବଂ ସଞ୍ଚାର ଧାରା ଓ ମାଧ୍ୟମର ବିକାଶ ଘଟାଇବା,

ଏହି ସମାଜର ଲକ୍ଷସାଧନ ପାଇଁ ଗବେଷଣା, ସଂପାନ, କର୍ମଶାଳା, ପାଠ୍ୟକ୍ରମ, ତାଲିମ କାର୍ଯ୍ୟକ୍ରମ, ମେଳା, ପ୍ରଦର୍ଶନୀ, ଚଳଚିତ୍ର, ଲୋକପ୍ରିୟ ଆଲୋଚନା, ପଥପ୍ରାନ୍ତ ନାଟକ, ପ୍ରଶ୍ନୋତ୍ତରୀ, ସଂଗୀତ-ନୃତ୍ୟ-ନାଟିକା ଆଦିର ଆୟୋଜନ ।

ବିଜ୍ଞାନ ପ୍ରସାରର ପ୍ରତିଷ୍ଠା ପରେ ପରେ କିଛି ବର୍ଷ ଧରି ଏହା ନିଷ୍କ୍ରିୟ ଅବସ୍ଥାରେ ରହିଥିଲା । କେବଳ ୧୯୯୪ ମସିହାରେ ଗୁରୁତ୍ୱର ସହିତ କିଛି କାମ କରାଗଲା । ପ୍ରଥମ କେତୋଟି କାମ ଭିତରେ ଥିଲା ମୁଦ୍ରଣପାଇଁ ପ୍ରସ୍ତୁତ ବିଜ୍ଞାନ ପୃଷ୍ଠା ପ୍ରକଳ୍ପ । ଏହାର ଉଦ୍ଦେଶ୍ୟ ଥିଲା ସମ୍ବାଦପତ୍ର ଆକାରର ଏକ ସୁସଜ୍ଜିତ ପୃଷ୍ଠାର ପ୍ରସ୍ତୁତି । ସେହି ପୃଷ୍ଠାରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଭାରତରେ ଘଟୁଥିବା ବିକାଶ ଉପରେ ଉପଯୋଗୀ ଫଟୋ ଓ ଚିତ୍ର ସହିତ ଗୋଟିଏ ବା ଦୁଇଟି ବଡ଼ ଲେଖା ଓ କେତୋଟି ଛୋଟ ସୂଚନା ଦେବାର ଯୋଜନା ରହିଥିଲା । ପାଉଥିବା ଅବସ୍ଥାରେ ଛାପିପାରିଲା ଭଳି ଏହା ଖବର କାଗଜମାନଙ୍କୁ ଯୋଗାଇ ଦିଆଯାଉଥିଲା । ପ୍ରଥମେ ମାସକୁ ଥରେ କରି ଏହି ପୃଷ୍ଠା ହିନ୍ଦୀ ଓ ଇଂରାଜୀରେ ପ୍ରକାଶିତ ହେବାର ଯୋଜନା ହୋଇଥିଲା । ପରେ ଗୋଟିଏ ଶିଶୁ ପୃଷ୍ଠା, ଅନ୍ୟ ମୁଖ୍ୟ ଆଞ୍ଚଳିକ ଭାଷାରେ ବିଜ୍ଞାନ ପୃଷ୍ଠା ଓ କିଛି ଲେଖାର ସମାହାର ମଧ୍ୟ ପ୍ରସ୍ତୁତ କରାଗଲା । ଏବେ ପ୍ରାୟ ୨୦ଟି ସମ୍ବାଦ ପତ୍ରର ୩୦ରୁ ଅଧିକ ସଂସ୍କରଣରେ ଏହି ପୃଷ୍ଠାମାନ ମାସକୁ ଥରେ ବା ଦୁଇଥର କରି ସାରା ଦେଶରେ ପ୍ରକାଶ ପାଉଛି । ପ୍ରକୃତରେ ଆଜି ବିଜ୍ଞାନ ପ୍ରସାରର ପୃଷ୍ଠାଗୁଡ଼ିକ ଦେଶରେ ସର୍ବାଧିକ ସଂଖ୍ୟାରେ ପ୍ରକାଶିତ ହେଉଅଛି । ଏହି ସମ୍ବାଦ ପତ୍ରଗୁଡ଼ିକର ମିଳିତ ପ୍ରସାରଣ ସଂଖ୍ୟା ୨୫ କୋଟିରୁ ଅଧିକ । ଏହି ବିଜ୍ଞାନ ପୃଷ୍ଠାର ପ୍ରକାଶନ ଫଳରେ ଅନ୍ୟ ସମ୍ବାଦ ପତ୍ରମାନଙ୍କରେ ବିଜ୍ଞାନ ବିଷୟରେ ଅଧିକ ସମ୍ବାଦ ପାଇଁ ଚାହିଦା ବଢ଼ିଲାଣି ।

ବିଜ୍ଞାନ ପ୍ରସାରର ପ୍ରକାଶନ କାର୍ଯ୍ୟକ୍ରମରେ କ୍ରମଶଃ ଉନ୍ନତି ଘଟୁଛି । କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ଧାରାବାହିକ ପ୍ରକାଶନ ବାହାରିଛି ଏବଂ ଆଉ କେତୋଟିର ଯୋଜନା କରାଯାଉଛି । ବିଜ୍ଞାନ ପ୍ରସାର ଦ୍ୱାରା ପ୍ରକାଶିତ ପ୍ରଥମ ମୁଖ୍ୟ ଇଂରାଜୀ ପ୍ରକାଶନ ହେଲା ପଞ୍ଜାବରେ ବିଜ୍ଞାନକୁ ଲୋକପ୍ରିୟ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା *ରୁଚିରାମ ସାହାଣୀଙ୍କ ସ୍ମୃତିଲିପି* । 'ସ୍ୱାଧୀନତାପୂର୍ବ ଭାରତରେ ଅଗ୍ରଣୀ ବିଜ୍ଞାନଲୋକପ୍ରିୟକାରୀ' ଧାରାବାହିକ ଅନ୍ତର୍ଭୁକ୍ତ ଏହି ପ୍ରକାଶନ ବିଜ୍ଞାନ ସଞ୍ଚାରକଙ୍କ ମଧ୍ୟରେ ସକାରାତ୍ମକ ସଚେତନତା ସୃଷ୍ଟି କରିଛି ଏବଂ ଦେଶର ଅନ୍ୟସବୁ ଅଞ୍ଚଳରେ ଏଭଳି ବ୍ୟକ୍ତିମାନଙ୍କୁ ଖୋଜିବା ପାଇଁ ଗବେଷକମାନଙ୍କୁ ପ୍ରେରଣା ଯୋଗାଇଛି । ଫଳରେ ସ୍ୱାଧୀନତାପୂର୍ବ ଭାରତରେ ବିଜ୍ଞାନକୁ ଲୋକପ୍ରିୟ କରାଇବାରେ ଅଗ୍ରଣୀ ଭୂମିକା ନେଇଥିବା କିଛି ବ୍ୟକ୍ତିଙ୍କ ନାମ ଆବିଷ୍କୃତ ହୋଇପାରିଛି ।

ଆଗ ସମୟର ବିଶିଷ୍ଟ ଲେଖକମାନେ ଲେଖିଥିବା ଅନେକ ଗୁରୁତ୍ୱପୂର୍ଣ୍ଣ ଲୋକପ୍ରିୟ ବିଜ୍ଞାନ ପୁସ୍ତକ ବହୁଦିନ ଧରି ଛାତ୍ରଛାତ୍ରୀମାନଙ୍କୁ ପ୍ରେରଣା ଦେଇ ଆସିଛି । କିନ୍ତୁ ଆଜିର ଯୁବପିଢ଼ିଙ୍କ ହାତରେ ଏହି ପୁସ୍ତକମାନ ଆଉ ଦେଖାଯାଉ ନାହିଁ । ଏହାର କାରଣ ନୁହେଁ

ଯେ ସେହିସବୁ ଲେଖା ଅପ୍ରାସଙ୍ଗିକ ହୋଇଯାଇଛି । ସେଗୁଡ଼ିକ ଆଉ ମିଳୁନଥିବାରୁ ଏହା ଘଟୁଛି । ବିଜ୍ଞାନ ପ୍ରସାରର ଲୋକପ୍ରିୟ ବିଜ୍ଞାନ କ୍ଲାସିକ୍ ଧାରାବାହିକରେ ଏହିସବୁ ପୁସ୍ତକର ପୁନଃପ୍ରକାଶନର ବ୍ୟବସ୍ଥା ହେଉଛି । ସୁଲଭ ମୂଲ୍ୟରେ ପ୍ରକାଶିତ ହେଉଥିବାରୁ ଏହି ପୁସ୍ତକଗୁଡ଼ିକ ଅଧିକରୁ ଅଧିକ ପିଲାଙ୍କ ପାଖରେ ପହଞ୍ଚିପାରିବ ବୋଲି ଆଶା ରହିଛି । ଏଭଳି ଦୁଇଟି କ୍ଲାସିକ୍ ପୁସ୍ତକର ପ୍ରକାଶନ ହୋଇସାରିଛି ଏବଂ ଆଉ କେତେକ ପ୍ରକାଶ ଅପେକ୍ଷାରେ ରହିଛି । ପ୍ରକାଶିତ ବହିଦୁଇଟି ହେଉଛି - ମାଇକେଲ ଫାରାଡେଙ୍କର *ମହମବତୀର ରାସାୟନିକ ଇତିହାସ* ଓ ସି· ଭି· ବଏଜଙ୍କର *ସାବୁନ ଫୋଟକା ଓ ତାଙ୍କୁ ଗଢୁଥିବା ଶକ୍ତି* ।

୧୯୯୫ ମସିହାର ଜାତୀୟ ବିଜ୍ଞାନ ଦିବସ ପାଳନ କରିବା ଅବସରରେ ଏହାର କେନ୍ଦ୍ରୀୟ ବିଷୟବସ୍ତୁ "ସ୍ୱାସ୍ଥ୍ୟ ପାଇଁ ବିଜ୍ଞାନ"କୁ ଆଧାର କରି ବିଜ୍ଞାନ ପ୍ରସାର 'ସ୍ୱାସ୍ଥ୍ୟ ସିରିଜ' ନାମକ ଏକ ଧାରାବାହିକର ପ୍ରକାଶନ ଆରମ୍ଭ କରିଥିଲା । ଏଥିରେ ସବୁ ସାଧାରଣ ରୋଗ ଏବଂ ସେଗୁଡ଼ିକର ଚିକିତ୍ସା ଓ ପ୍ରତିଷେଧକ ବ୍ୟବସ୍ଥା ବିଷୟରେ ଚର୍ଚ୍ଚା କରାଯିବ । ଏହି ସିରିଜରେ ପ୍ରକାଶିତ ପ୍ରଥମ ତିନୋଟି ବହିର ବିଷୟ ହେଲା - ଯୌନରୋଗ, ଶ୍ୱାସରୋଗ ଓ କାମଳ ।

ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଯେଉଁ କ୍ଷେତ୍ରରେ ଭାରତର ଅବଦାନ କାଳଜୟୀ ହୋଇରହିଛି ଏବଂ ଆଧୁନିକ ବିଜ୍ଞାନ ଉପରେ ପ୍ରଭାବ ପକାଇଛି ସେହିସବୁ ବିଷୟରେ "ଭାରତର ବୈଜ୍ଞାନିକ ଐତିହ୍ୟ" ଶୀର୍ଷକ ଏକ ପୁସ୍ତକମାଳା ପ୍ରକାଶ କରିବା ପାଇଁ ଯୋଜନା କରିଛି । ସେଗୁଡ଼ିକ ମଧ୍ୟରେ ଯାହାକି କାଳାତୀତ ହୋଇ ମଧ୍ୟ ଆଧୁନିକ । ଏହି ପୁସ୍ତକମାଳାର ପ୍ରଥମ ପ୍ରକାଶନ ହେଉଛି - *କଳଙ୍କବିହୀନ ବିସ୍ମୟ : ଦିଲ୍ଲୀ ଲୌହସ୍ତମ୍ଭ ବିଷୟକ ଅନୁସନ୍ଧାନ* - ଜାନୁଆରୀ ୩୦, ୧୯୯୭ରେ ଆତ୍ମପ୍ରକାଶ କରିଛି । ଦ୍ୱିତୀୟ ପୁସ୍ତକ *ଯେଉଁଠାରେ ଦେବତାମାନେ ଜୀବନ୍ତ ହୋଇଉଠନ୍ତି : ଦକ୍ଷିଣ ଭାରତୀୟ କାଂସ୍ୟ ମୂର୍ତ୍ତି ବିଷୟକ ଅନୁସନ୍ଧାନ* ନିକଟରେ ପ୍ରକାଶ ପାଇବ ।

୧୯୯୫ ଅକ୍ଟୋବର ୨୪ ତାରିଖରେ ଘଟିଥିବା ସମ୍ପୂର୍ଣ୍ଣ ସୂର୍ଯ୍ୟପରାଗ ଦେଶସାରା ଏକ ସଚେତନତା ଅଭିଯାନ ଚଳାଇବାରେ ବିଜ୍ଞାନ ପ୍ରସାର ପାଇଁ ଏକ ବିରଳ ସୁଯୋଗ ଆଣିଦେଇଥିଲା । ପରାଗ ସମ୍ପର୍କରେ ଲୋକଙ୍କର ଅନ୍ଧବିଶ୍ୱାସ ଓ ଭ୍ରାନ୍ତ ଧାରଣାଗୁଡ଼ିକୁ ଦୂର କରିବା ଏବଂ ଏହି ବିଷୟରେ ଜଣାଥିବା ବୈଜ୍ଞାନିକ ତଥ୍ୟ ପ୍ରତି ଆଗ୍ରହ ବଢ଼ାଇବା ଏହି ଅଭିଯାନର ଲକ୍ଷ୍ୟ ରହିଥିଲା । ବିଜ୍ଞାନ ପ୍ରସାର ଏବଂ ରାଷ୍ଟ୍ରୀୟ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ସଞ୍ଚାର ପରିଷଦ (ଏନ୍‌ସିଏସ୍‌ଟିସି) ମିଳିତ ଭାବରେ ଅନେକଗୁଡ଼ିଏ କାର୍ଯ୍ୟକ୍ରମର ଆୟୋଜନ କରିଥିଲେ । ଏହା ଭିତରେ ଥିଲା:

୧. ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କ ପାଇଁ ଦୂରବୀକ୍ଷଣ ଯନ୍ତ୍ର ପ୍ରସ୍ତୁତି କର୍ମଶାଳା ।

୨. ବିଭିନ୍ନ ପୁସ୍ତକ, ଏକ ସୂର୍ଯ୍ୟପରାଗ ଚାର୍ଟ ଓ ପିଲାମାନଙ୍କ ପାଇଁ କାର୍ଯ୍ୟ ସରଞ୍ଜାମର ପ୍ରସ୍ତୁତି ।

୩. କେତେକ ଭିଡିଓ ଚିତ୍ରର ପ୍ରସ୍ତୁତି ଓ ପ୍ରଦର୍ଶନ ।

ଲୋକମାନେ ଯେପରି ବାହାରକୁ ଆସି ସମ୍ପୂର୍ଣ୍ଣ ସୂର୍ଯ୍ୟପରାଗକୁ ଦେଖିବେ ତାହା ନିଶ୍ଚିତ କରିବା ପାଇଁ ବିଜ୍ଞାନ ପ୍ରସାର ଏକ ନୂତନ ଧାରଣାର କଳ୍ପନା କରି ଏହାକୁ କାର୍ଯ୍ୟକାରୀ କରିଥିଲା । ଏଥିପାଇଁ ବିଜ୍ଞାନ ପ୍ରସାର ଏକ ସମ୍ପୂର୍ଣ୍ଣ ସୂର୍ଯ୍ୟପରାଗ ଶପଥ ପ୍ରଚଳନ କରିଥିଲା । ଦେଶର ସବୁ ଅଞ୍ଚଳରୁ ହଜାର ହଜାର ସଂଖ୍ୟାରେ ଜନସାଧାରଣ ଏଥିରେ ସ୍ୱାକ୍ଷର କରି ପଠାଇଥିଲେ । କେତେକ ବ୍ୟକ୍ତି ଓ ସ୍ୱେଚ୍ଛାସେବୀ ସଂସ୍ଥା ନିଜ ଉଦ୍ୟମରେ ଏହି ଶପଥପତ୍ରକୁ ଆଞ୍ଚଳିକ ଭାଷାରେ ଅନୁବାଦ କରି ଆହୁରି ଅଧିକ ସଂଖ୍ୟାରେ ବାଣ୍ଟିଥିଲେ । ଏହିସବୁ କାମ ଫଳରେ ସମଗ୍ର ଦେଶରେ ସୂର୍ଯ୍ୟପରାଗ ସମ୍ବନ୍ଧୀୟ କାର୍ଯ୍ୟକଳାପ ଲାଗି ରହିଥିଲା । ବିଜ୍ଞାନ ପ୍ରସାର, ରାଷ୍ଟ୍ରୀୟ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ସଞ୍ଚାର ପରିଷଦ ଓ ଅନ୍ୟାନ୍ୟ ସଂସ୍ଥା ଏପରି ଗୋଟିଏ ପରିସ୍ଥିତି ସୃଷ୍ଟି କରିଥିଲେ ଯାହାଦ୍ୱାରା ଲକ୍ଷ ଲକ୍ଷ ଲୋକ ବାହାରକୁ ଆସି ନିରାପଦ ଭାବରେ ଏହି ଦର୍ଶନୀୟ ଘଟଣାକୁ ଉପଭୋଗ କରିଥିଲେ । ଏହା ଅନେକଙ୍କ ପାଇଁ ଏକ ଅଦ୍ୱିତୀୟ ଅନୁଭୂତି ଦେଇଥିଲା ଏବଂ ସାରା ଦେଶରେ ବିଜ୍ଞାନ ପ୍ରସାରର ନାମକୁ ଘରେ ଘରେ ଜଣାଶୁଣା କରାଇପାରିଲା ।

୧୯୯୫ ଅକ୍ଟୋବର ୨୪ର ସମ୍ପୂର୍ଣ୍ଣ ସୂର୍ଯ୍ୟପରାଗ ଅବସରରେ ବିଜ୍ଞାନ ପ୍ରସାର ନିଜର ଶ୍ରାବ୍ୟଦୃଶ୍ୟ କାର୍ଯ୍ୟକ୍ରମରେ କେତେକ ଭିଡିଓ ଚିତ୍ର ଓ ରେଡିଓ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲେ । ଏହି ଘଟଣା-ଆଧାରିତ ଉଦ୍ୟମ ବିଜ୍ଞାନ ପ୍ରସାର ପରିବାର ପାଇଁ ଖୁବ୍ ସନ୍ତୋଷଜନକ ହେବା ସଙ୍ଗେ ସଙ୍ଗେ ଲୋକଙ୍କ ମଧ୍ୟରେ ବେଶ୍ ଉତ୍ସାହ ସୃଷ୍ଟି କରିଥିଲା ।

ବିଜ୍ଞାନ ପ୍ରସାର ଏବେ ଭିପ୍ରିସ୍ ନାମରେ ଏକ ସୂଚନାତନ୍ତ୍ର ଗଠନ କରିଛି । ଏଥିପାଇଁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଉପରେ ଏକ ସହଜଲଭ୍ୟ ସୂଚନା ଭଣ୍ଡାର ଗଠନ କରିବା ପାଇଁ ବିଭିନ୍ନ କ୍ଷେତ୍ରରୁ, ବିଶେଷକରି ବିଜ୍ଞାନ ସଞ୍ଚାରକମାନଙ୍କ ପକ୍ଷରୁ, ବହୁଦିନରୁ ଦାବି ଉଠୁଥିଲା । ଏହି ସୂଚନାତନ୍ତ୍ର କମ୍ପ୍ୟୁଟରଭିତ୍ତିକ ଓ ବିଭାଗୀକୃତ ରୂପରେ ନିର୍ମିତ ହେବ ଏବଂ ସମସ୍ତ ପ୍ରକାରର ବିଜ୍ଞାନ ସଞ୍ଚାରକଙ୍କ ସୂଚନା ଚାହିଦା ପୂରଣ କରିବାର ଲକ୍ଷ ରଖିବ ।

ଭିପ୍ରିସ୍ କ୍ରମରେ ବର୍ତ୍ତମାନ ପାଇଁ ବିଜ୍ଞାନ ପ୍ରସାର ପକ୍ଷରୁ ଗୋଟିଏ ପାକ୍ଷିକ କର୍ତ୍ତିତ ସମ୍ବାଦପତ୍ର ସେବା, ଏକ ଇଲେକ୍ଟ୍ରନିକ ଇସ୍ତାହାର ସେବା, ଦୂରଦର୍ଶନର 'ଟେଲିଟେକ୍ସ୍ଟ' କାର୍ଯ୍ୟକ୍ରମରେ ଦୁଇଟି ପୃଷ୍ଠା ଏବଂ ରେଡ଼ିଓରେ ଏକ ସାପ୍ତାହିକ ବିଜ୍ଞାନ ସମାଚାରର ପ୍ରସାରଣ କରାଯାଉଛି । ଏହାଛଡ଼ା ତାଲିମ, ସି·ଡି·ରମ୍ ବିକାଶ ଓ ପ୍ରସ୍ତୁତି ଏବଂ ବିଭିନ୍ନ ବିଷୟରେ ସୂଚନା ତଥ୍ୟାଧାର ନିର୍ମାଣ ଆଦି ସମେତ ଅନ୍ୟ କେତେକ ସେବା ଓ ସରଞ୍ଜାମ ଯୋଗାଇବାର ଯୋଜନା କରାଯାଉଛି ।

"ପରିବେଶ ଓ ନିରାପତ୍ତା ଆଇନ: ବିଧି ଓ ମାର୍ଗଦର୍ଶନ ଦଲିଲ" ଉପରେ ତଥ୍ୟାଧାରର ପ୍ରଥମ ପର୍ଯ୍ୟାୟ ପୂରା ହୋଇଯାଇଛି । ୧୯୯୬ ସେପ୍ଟେମ୍ବର ୧୨ ଦିନରୁ ଇଣ୍ଟରନେଟରେ ବିଜ୍ଞାନ ପ୍ରସାରର ମୂଳପୃଷ୍ଠା (ହୋମପେଜ୍) ସ୍ଥାପିତ ହୋଇଛି । ଏହି ପୃଷ୍ଠାର ଅଂଶ ରୂପେ "କମ୍‌କମ୍" ଶୀର୍ଷକ ଏକ ଇଲେକ୍ଟ୍ରନିକ ଲୋକପ୍ରିୟ ବିଜ୍ଞାନ ପତ୍ରିକାର ଯୋଜନା କରାଯାଇଛି । ମୂଳପୃଷ୍ଠାର ଅନ୍ୟ ଅଂଶଗୁଡ଼ିକ ହେଉଛି ବିଜ୍ଞାନ ପ୍ରସାର ସମ୍ପର୍କରେ ସୂଚନା, ଦୈନନ୍ଦିନ ପାଣିପାଗ ସମ୍ପର୍କିତ ଅନ୍ୟ ସଂଯୋଗ ସହିତ ଦୈନିକ/ମାସିକ ଆକାଶ ମାନଚିତ୍ର, ଭାରତରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ନିଯୁକ୍ତି ସୁଯୋଗ, ଗବେଷଣାଗାର ସମ୍ବାଦ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ସମ୍ବନ୍ଧୀୟ ତଥ୍ୟାଧାର ଇତ୍ୟାଦି । ଏହାକୁ ହିନ୍ଦୀ ଏଚ୍‌ଟିଏମ୍‌ଏଲ୍ ରୂପରେ ମଧ୍ୟ ଦେଖାଯାଇପାରିବ । ସେଥିପାଇଁ ଦରକାର ହେଉଥିବା ହିନ୍ଦୀ ପ୍ଲଗ୍‌ଇନ୍ ସେଠାରେ ଯୋଗାଇ ଦିଆଯାଇଛି । ସେଥିରେ ଏକ ଆଲୋଚନା ମଞ୍ଚର ବ୍ୟବସ୍ଥା ରହିଛି ଯାହା ପରିଦର୍ଶକମାନଙ୍କର ମତାମତ ସଂଗ୍ରହ କରିପାରିବ ଓ ସମସ୍ତଙ୍କର ଦେଖିବା ପାଇଁ ପ୍ରଦର୍ଶିତ କରିପାରିବ ।

ବିଜ୍ଞାନପ୍ରସାର ମଧ୍ୟ ୧୦୮ଟି ଭାଗରେ 'ମାନବର ବିକାଶ' ନାମକ ଏକ ଅଡିଓ କ୍ୟାସେଟ୍ (ଆକାଶବାଣୀ ଓ ଏନ୍‌ସିଏସ୍‌ଟିସି ମିଳିତ ପ୍ରଚେଷ୍ଟାରେ) ୧୮ଟି ଭାରତୀୟ ଭାଷାରେ ପ୍ରସ୍ତୁତ ଓ ପ୍ରସାର କରାଇଛି । ଅନେକଗୁଡ଼ିଏ ଭିଡିଓ କାର୍ଯ୍ୟକ୍ରମ ମଧ୍ୟ ପ୍ରସ୍ତୁତ କରାଯାଇଛି । ସମ୍ପ୍ରତି ପ୍ରକାଶିତ ଏହି କାର୍ଯ୍ୟକ୍ରମ ମଧ୍ୟରେ "ଉଦ୍ଭିଦରୁ ପେଟ୍ରୋଲ", "ଧୂମକେତୁ" (ହେଲି ଧୂମକେତୁ ଆଗମନ ଉଦ୍ଦେଶ୍ୟରେ) ଆଦି ପ୍ରଧାନ । ଆଉ କେତେକ ମଧ୍ୟ ପ୍ରସ୍ତୁତି ଅବସ୍ଥାରେ ରହିଛି ।

ଏହା ସବୁ କଥା କହୁନାହିଁ । ବିଜ୍ଞାନପ୍ରସାର ଅନେକ କାର୍ଯ୍ୟ କରିଚାଲିଛି । କିନ୍ତୁ ବର୍ତ୍ତମାନ ପାଇଁ ଏତିକି ଯଥେଷ୍ଟ ହେବ ।

ନରେନ୍ଦ୍ର କୁମାର ସେହେଗଲ,
ନିର୍ଦ୍ଦେଶକ, ବିଜ୍ଞାନପ୍ରସାର
(୧୯୯୮)

# ମୁଖବନ୍ଧ

## (ଓଡ଼ିଆ ସଂସ୍କରଣ)

ବିଜ୍ଞାନ ପ୍ରସାରର ପ୍ରକାଶନ କାର୍ଯ୍ୟକ୍ରମ ଏବେ ଏକ ନିର୍ଦ୍ଦିଷ୍ଟ ରୂପ ନେଉଛି । ପ୍ରକାଶନ ପାଇଁ କେତେକ ବିଷୟକ୍ରମ ସ୍ଥିର ହୋଇସାରିଛି, ଆଉ କିଛି ଏବେ ଚୂଡ଼ାନ୍ତ ହେଉଛି । ଭାରତର ବିଜ୍ଞାନ ଐତିହ୍ୟ, ବିଜ୍ଞାନୀ ଜୀବନୀ, ଜନପ୍ରିୟ ବିଜ୍ଞାନ କ୍ଲାସିକ ପୁନଃମୁଦ୍ରଣ, ସ୍ୱାସ୍ଥ୍ୟ, ପରିବେଶୀୟ ସଙ୍କଟସ୍ଥଳ ଆଦି ବିବିଧ କ୍ଷେତ୍ରରେ ବିଜ୍ଞାନ ପ୍ରସାର କିଛି କିଛି ବହି ପ୍ରକାଶ କରିଚାଲିଛି । ଦେଶର ସବୁ ଅଞ୍ଚଳରେ ଅଧିକ ସଂଖ୍ୟାର ପାଠକଙ୍କ ପାଖରେ ପହଞ୍ଚାଇବା ଲକ୍ଷରେ ଏହି ବହିଗୁଡ଼ିକୁ ଆମେ ବିଭିନ୍ନ ଭାରତୀୟ ଭାଷାରେ ପ୍ରକାଶ କରିବାର କାର୍ଯ୍ୟକ୍ରମ ହାତକୁ ନେଇଛୁ ।

*ମୋର ବନ୍ଧୁ ଶ୍ରୀ ଲିକୀ* ବହିଟି ପ୍ରଥମେ ପ୍ରକାଶ ପାଇଥିଲା ୧୯୩୭ ମସିହାରେ । ଶେଷ ଜୀବନରେ ଭାରତକୁ ନିଜର ଘର ଭାବରେ ଆଦରି ନେଇଥିବା ବିଶିଷ୍ଟ ବୈଜ୍ଞାନିକ ଓ ବିଜ୍ଞାନ ଜନପ୍ରିୟକାରକ ଜେ· ବି· ଏସ୍· ହାଲ୍‌ଡେନଙ୍କର ଏହା ଥିଲା ପିଲାଙ୍କ ପାଇଁ ଏକମାତ୍ର ବହି । ପୃଥିବୀ ସାରା କେତେ ପିଢ଼ିର ପିଲାଙ୍କୁ ଏହା ଆହ୍ଲାଦିତ କରିଛି । ଆମେ ଆଶା କରୁଛୁ ଯେ ଏହି ଓଡ଼ିଆ ସଂସ୍କରଣଟି ସେହିଭଳି ଉତ୍ସାହଭରା ଆଦର ପାଇବ ।

ଆଗାମୀ ଦିନମାନଙ୍କରେ ଆମେ ଓଡ଼ିଆରେ ଅନ୍ୟ କେତେ ବହି ପ୍ରକାଶ କରିବାର ଯୋଜନା ରଖିଛୁ । ଏହି ବହିର ଅନୁବାଦ ପାଇଁ ଅଧ୍ୟାପକ ଜଗନ୍ନାଥ ମହାନ୍ତିଙ୍କ ନିକଟରେ ଏବଂ ପ୍ରକାଶନରେ ସହାୟତା ପାଇଁ ଡକ୍‌ଟର ନିଖିଳ ମୋହନ ପଟ୍ଟନାୟକଙ୍କ ପାଖରେ ଆମେ ବିଶେଷ କୃତଜ୍ଞ । ଏହି ବହିଟିକୁ ପ୍ରଥମେ ଆମର ଦୃଷ୍ଟିକୁ ଆଣିଥିବାରୁ ବିଜ୍ଞାନ ସଂଚାରକ ଓ ସ୍ୱଳ୍ପମୂଲ୍ୟ ଶିକ୍ଷଣ ସାମଗ୍ରୀ ବିଶାରଦ ଶ୍ରୀ ଅରବିନ୍ଦ ଗୁପ୍ତାଙ୍କୁ ଆମର ବିଶେଷ ଧନ୍ୟବାଦ ।

ଭି· ବି· କାମ୍ବ୍ଲେ,
ଭାରପ୍ରାପ୍ତ ନିର୍ଦ୍ଦେଶକ,
ବିଜ୍ଞାନ ପ୍ରସାର

ନୂଆଦିଲ୍ଲୀ
ଫେବୃଆରୀ ୨୧, ୨୦୦୧

# ଜନ୍ ବର୍ଡନ ସ୍ୟାଣ୍ଡରସନ ହାଲ୍‌ଡେନ

## ଜୀବନ ଓ କାର୍ଯ୍ୟର ସଂକ୍ଷିପ୍ତ ପରିଚିତି*

"ମୁଁ ପ୍ରକୃତିର ଏକ ଅଂଶ ଏବଂ ବିଜୁଳିର ଝଲକ ବା ପର୍ବତମାଳା ଆଦି ପ୍ରକୃତିର ଅନ୍ୟ ସବୁ ଜିନିଷ ଭଳି ମୋର ସମୟ ବିତିଯିବ ଓ ମୁଁ ଶେଷ ହୋଇଯିବି । ଏହି ସମ୍ଭାବନା ମୋତେ ବିଚଳିତ କରେନାହିଁ । କାରଣ ମୁଁ ମରିଗଲେ ସୁଦ୍ଧା ମୋର କାମରୁ କିଛି ବଞ୍ଚି ରହିବ ।" **ଜେ.ବି.ଏସ୍. ହାଲ୍‌ଡେନ**

ଅନେକଙ୍କ ପାଖରେ ଜନ୍ ବର୍ଡନ ସ୍ୟାଣ୍ଡରସନ ହାଲ୍‌ଡେନ ସୁପରିଚିତ । ସମ୍ଭବତଃ ନିଜ ଛଡ଼ା ଆଉ କେହି ତାଙ୍କ କାର୍ଯ୍ୟକୁ ଅଧିକ ସ୍ପଷ୍ଟ ଭାବରେ ବୁଝାଇ ପାରିବେ ନାହିଁ । ତେବେ ହାଲ୍‌ଡେନଙ୍କର ଲେଖାଗୁଡ଼ିକୁ ଯୁବପିଢ଼ିଙ୍କୁ ଓ ବିଜ୍ଞାନ ପଢ଼ି ନଥିବା ପାଠକଙ୍କ ପାଖରେ ପରିଚିତ କରାଇବା ହେଲା ଆମର ଲକ୍ଷ । ଆମେ ଅନୁଭବ କରୁଛୁ ଯେ ସେମାନଙ୍କ ମଧ୍ୟରୁ ଅନେକେ ହାଲ୍‌ଡେନ କିଏ ଏବଂ ସିଏ କ'ଣ କରିଥିଲେ ତାହା ଜାଣି ନଥିବେ । ହାଲ୍‌ଡେନଙ୍କ ବ୍ୟକ୍ତିତ୍ୱର ଅନେକ ଦିଗ ପ୍ରକୃତରେ ପ୍ରେରଣାଦାୟକ । ବିଜ୍ଞାନର ବିକାଶ ଓ ସମାଜ ସହିତ ତାହାର ସମ୍ପର୍କ, ବିଜ୍ଞାନର ଧାରାର ଗୁରୁତ୍ୱ, ଶିକ୍ଷା, ଜନସାଧାରଣଙ୍କ କଲ୍ୟାଣ ଆଦି ବିଷୟରେ ତାଙ୍କର ମତାମତ ଓ ଉଦ୍‌ବେଗ ଆଜି ମଧ୍ୟ ଅତ୍ୟନ୍ତ ପ୍ରାସଙ୍ଗିକ । ସେ ତାଙ୍କ ଜୀବନର ଶେଷ ପାଞ୍ଚବର୍ଷ ଭାରତରେ କଟାଇଥିଲେ ଏବଂ ଜଣେ ଭାରତୀୟ ନାଗରିକ ହୋଇଥିଲେ । ଏହିସବୁ ବିଷୟକୁ ଦୃଷ୍ଟିରେ ରଖି ଆମେ ହାଲ୍‌ଡେନଙ୍କ ଜୀବନ ଓ କାର୍ଯ୍ୟର କେତୋଟି ଦିଗ ଉପରେ ଆଲୋକପାତ କରିବାକୁ ଉଦ୍ୟମ କରିଛୁ । ତେବେ ବିଭିନ୍ନ କାରଣରୁ ଏହି ଲେଖାଟିରେ ସବୁକିଛି ରହିବା ସମ୍ଭବ ହୋଇପାରିବ ନାହିଁ ।

---

** ସୁବୋଧ ମହାନ୍ତିଙ୍କ ଦ୍ୱାରା ପ୍ରସ୍ତୁତ*

ହାଲ୍‌ଡେନ ବାସ୍ତବରେ ଜଣେ ବହୁପ୍ରତିଭାସମ୍ପନ୍ନ ବ୍ୟକ୍ତି ଥିଲେ । ଜଣେ ବୈଜ୍ଞାନିକ ଭାବରେ ତାଙ୍କର ସବୁଠାରୁ ଅଧିକ ଜଣାଶୁଣା ଅବଦାନ ଥିଲା ବିବର୍ତ୍ତନର ଗାଣିତିକ ତତ୍ତ୍ୱ ସମ୍ବନ୍ଧରେ । ବ୍ୟକ୍ତିସମୂହ ଆନୁବଂଶିକ ବିଜ୍ଞାନ (ପପୁଲେସନ୍ ଜେନେଟିକ୍‌ସ୍‌)ର ସେ ଥିଲେ ଅନ୍ୟତମ ପ୍ରତିଷ୍ଠାତା । ମାତ୍ର ସେ ଜ୍ୟୋତିଃପଦାର୍ଥ ବିଜ୍ଞାନ ଓ ବ୍ୟକ୍ତିସମୂହ ଆନୁବଂଶିକ ବିଜ୍ଞାନରେ ସ୍ୱଚ୍ଛନ୍ଦ ଭାବରେ ଲେଖିପାରୁଥିଲେ । ବାସ୍ତବିକ ଜ୍ୟୋତିଃପଦାର୍ଥ ବିଜ୍ଞାନରେ ତାଙ୍କର ଜ୍ଞାନ ଥିଲା ଆଶ୍ଚର୍ଯ୍ୟଜନକ । ହାଲ୍‌ଡେନ ପ୍ରକୃତରେ ପ୍ରାୟ ବିଜ୍ଞାନର ସବୁ ବିଭାଗରେ ଆଗ୍ରହୀ ଥିଲେ ।

ସେ ଜଣେ ପରସ୍ପରବିରୋଧୀ ସ୍ୱଭାବଧାରୀ ବ୍ୟକ୍ତିତ୍ୱ ଥିଲେ । ବିଜ୍ଞାନରେ ହାଲ୍‌ଡେନ ଥିଲେ ଖୁବ ମୁକ୍ତମନା । ମାତ୍ର ରାଜନୀତିରେ ସେ ଥିଲେ ମତାନ୍ଧତାର ଜୀବନ୍ତ ପ୍ରତୀକ । ସେ ଥିଲେ ଯେମିତି ରୁକ୍ଷ ସେମିତି ଦୟାଶୀଳ । ସେ ଥିଲେ ମିତବ୍ୟୟୀ ଏବଂ କିଛି ନଷ୍ଟ କରୁନଥିବା ମଣିଷ । ସେ ଔପଚାରିକତା ପସନ୍ଦ କରୁ ନଥିଲେ ଏବଂ ସର୍ବଦା କର୍ତ୍ତବ୍ୟନିଷ୍ଠ ଥିଲେ । ସେ ବିଜ୍ଞାନ ବ୍ୟତୀତ ଅନ୍ୟ କେଉଁ ବିଷୟରେ ବାର୍ତ୍ତାଳାପ କରିବା ତଥା ସାମାଜିକ ଦେଖାସାକ୍ଷାତର ପ୍ରିୟ ନଥିଲେ ।

## ପରିବାର ପୃଷ୍ଠଭୂମି ଓ ଶିକ୍ଷା

ଜେ.ବି.ଏସ୍. ହାଲ୍‌ଡେନ ୧୮୯୨ ମସିହା ନଭେମ୍ବର ୫ ତାରିଖରେ ଇଂଲଣ୍ଡର ଅକ୍ସଫୋର୍ଡଠାରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ୧୩ଶ ଶତାବ୍ଦୀର ମଧ୍ୟଭାଗରୁ ଆରମ୍ଭ ହୋଇଥିବା ଗୋଟିଏ ବଂଶର ଦାୟାଦ । ତାଙ୍କର ପିତା ଜନ ସ୍କଟ ହାଲ୍‌ଡେନ (୧୮୬୦-୧୯୩୬) ଥିଲେ ଜଣେ ଶରୀର ବିଜ୍ଞାନୀ ଏବଂ ମଣିଷର ଶ୍ୱାସକ୍ରିୟା ବିଷୟକ ଗବେଷଣାରେ ସେ ପ୍ରସିଦ୍ଧି ଅର୍ଜନ କରିଥିଲେ । ସେ ଦେଖାଇଥିଲେ ଯେ ରକ୍ତରେ ଥିବା ଅଙ୍ଗାରକାମ୍ଳର ପରିମାଣ ଉପରେ ଶ୍ୱାସପ୍ରଶ୍ୱାସର ବେଗ ନିର୍ଭର କରେ । ଅଧିକ ଉଚ୍ଚତା ତଥା ଗଭୀର ସମୁଦ୍ରର ଚାପ ନିଶ୍ୱାସପ୍ରଶ୍ୱାସ ଉପରେ ପ୍ରଭାବ କିପରି ପକାଇଥାଏ ତାହା ଉପରେ ସେ ଅନୁଧ୍ୟାନ କରିଥିଲେ । କାର୍ବନ ମନୋକ୍ସାଇଡ୍‌ର ବିଷାକ୍ତ ପ୍ରଭାବକୁ ସେ ବୁଝାଇବା ଫଳରେ ଖଣିମାନଙ୍କରେ ନିରାପତ୍ତା ବ୍ୟବସ୍ଥାକୁ ଉନ୍ନତ କରାଯାଇପାରିଥିଲା ।

ତାଙ୍କର ମାତା ଲୁଇସା କାଥଲିନ୍ ହାଲ୍‌ଡେନ (ଜନ୍ମିତ ଟ୍ରଟର) "ମଣିଷର ଦୁର୍ଗତି ଲାଘବ" କାର୍ଯ୍ୟରେ ସଂପୃକ୍ତ ହୋଇଥିଲେ । ହାଲ୍‌ଡେନ ନିଜ ପିତାମାତାଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ସେ ପରେ କହିଥିଲେ, "ମୁଖ୍ୟତଃ ବାପାଙ୍କ ଯୋଗୁ ହିଁ ମୁଁ ମୋର ସଫଳତା ପାଇଛି ।" ବାପାଙ୍କର ବ୍ୟକ୍ତିଗତ ଗବେଷଣାଗାରରେ ଜଣେ ସହାୟକ ଭାବରେ ହାଲ୍‌ଡେନ ବିଜ୍ଞାନ ବିଷୟରେ ତାଙ୍କର ପ୍ରଥମ ଶିକ୍ଷା ବାପାଙ୍କଠାରୁ ହିଁ ପାଇଥିଲେ । ତେଣୁ ପର ସମୟରେ ସେ କହୁଥିଲେ, "ଆଠବର୍ଷ ବୟସରୁ ବାପାଙ୍କୁ

ସାହାଯ୍ୟ କରି ଶିକ୍ଷାନବୀଶ ଭାବରେ ମୁଁ ବିଜ୍ଞାନ ବିଷୟରେ ମୋର ଅଧିକାଂଶ ଶିକ୍ଷା ପାଇଛି । ମୁଁ ବିଶ୍ୱବିଦ୍ୟାଳୟ ଡିଗ୍ରୀ ପାଇଛି ପ୍ରାଚୀନ ସାହିତ୍ୟ ପାଇଁ, ବିଜ୍ଞାନରେ ନୁହେଁ ।"

ନିଜର ବାଲ୍ୟଜୀବନ ସମ୍ବନ୍ଧରେ ହାଲ୍‌ଡେନ ଲେଖିଥିଲେ:

"କୌଣସି ଧର୍ମର ନୀତିନିୟମ ଭିତରେ ମୋର ପିଲାଦିନ କଟିନଥିଲା । ଆମ ଘରେ ବିଜ୍ଞାନ ଓ ଦର୍ଶନ ଉପରେ ଅଧିକ ବିଶ୍ୱାସ ରହିଥିଲା । ପିଲାବେଳରୁ ମୁଁ ସମସାମୟିକ ବିଚାରଧାରା ବିଷୟରେ ଜାଣିବାର ସୁଯୋଗ ପାଇଥିଲି । ଏହା ଫଳରେ ଆଜି (ବିଖ୍ୟାତ ବିଜ୍ଞାନୀ) ଆଇନଷ୍ଟାଇନ ମୋତେ ଅବୋଧ୍ୟ କିମ୍ବା (ଅଣପାରମ୍ପରିକ ମନସ୍ତତ୍ତ୍ୱବିତ) ଫ୍ରଏଡ୍ ବିରକ୍ତିକର ଲାଗନ୍ତିନାହିଁ । ଯୁବକ ଅବସ୍ଥାରେ ମୁଁ ଯୁଦ୍ଧକ୍ଷେତ୍ରରେ ଲଢ଼ିଥିଲି । ସେଥିରୁ ମଣିଷ ପ୍ରକୃତିର ଏଭଳି କିଛି ଦିଗ ବିଷୟରେ ଜାଣିବାକୁ ପାଇଥିଲି, ଯାହା ଜଣେ ସାଧାରଣ ବୁଦ୍ଧିଜୀବୀ କେବେ ଜାଣିବାର ସୁଯୋଗ ପାଇବନାହିଁ । ବୟସ୍କ ଅବସ୍ଥାରେ ଏବେ ମୁଁ ଜଣେ ଜୀବବିଜ୍ଞାନୀ । ଦୁନିଆକୁ ମୁଁ ଏକ ଭିନ୍ନ ଦୃଷ୍ଟିକୋଣରୁ ଦେଖିପାରୁଛି, ଏହା କିନ୍ତୁ ମୋତେ କିଛି ଭୁଲ ଧାରଣା ଦେଉଛି ବୋଲି ମୁଁ ଭାବୁନାହିଁ ।"

"ସ୍କୁଲରେ ପଢୁଥିଲାବେଳେ ଚଉଦ ବର୍ଷ ବୟସରେ ମୁଁ ପ୍ରାଚୀନ ସାହିତ୍ୟ କ୍ଷେତ୍ରରୁ ପଳାୟନ କଲି ଏବଂ ଲାଟିନ ଓ ଗ୍ରୀକ ସାହିତ୍ୟ ବଦଳରେ ରସାୟନ ବିଜ୍ଞାନ, ପଦାର୍ଥ ବିଜ୍ଞାନ, ଇତିହାସ ଓ ଜୀବବିଜ୍ଞାନ ପଢ଼ିଲି । ଏଥିରେ ବାପାଙ୍କର ପୂରା ସମର୍ଥନ ଥିଲା, କିନ୍ତୁ ପ୍ରଧାନ ଶିକ୍ଷକଙ୍କର ବିରକ୍ତିସୂଚକ ମତଥିଲା ଯେ ମୁଁ "କେବଳ ଆବଶ୍ୟକତାରୁ ଅଧିକ ବୁଦ୍ଧିମାନ" ହେବାପାଇଁ ଚେଷ୍ଟା କରୁଛି ।

ହାଲ୍‌ଡେନ ସାହିତ୍ୟ ପ୍ରତି ବିଶେଷ ଶ୍ରଦ୍ଧା ରଖିଥିଲେ । ଆମେ ଜାଣିବାରେ ସେକ୍ସପିଅର (୧୫୬୪-୧୬୧୬), ଦାନ୍ତେ(୧୨୬୫-୧୩୨୧), ସେଲି (୧୭୯୨-୧୮୫୧), କିଟ୍‌ସ (୧୭୯୫-୧୮୨୧), ରିମ୍ବଡ୍ (୧୮୫୪-୯୧) ଓ ବାଲଜାକ (୧୭୯୯-୧୮୫୦) ଆଦି ତାଙ୍କର ପ୍ରିୟ ଥିଲେ । ସେ ଡଷ୍ଟୋଭସ୍କି (୧୮୨୧-୮୧) ଓ ଟଲଷ୍ଟୟ (୧୮୨୮-୧୯୧୦)ଙ୍କ ଲେଖା ମଧ୍ୟ ପଢୁଥିଲେ । ତାଙ୍କର ଜି·ବି·ଶ' (୧୮୫୬-୧୯୫୦) ଓ ଏଚ·ଜି· ୱେଲ୍‌ସ (୧୮୬୬-୧୯୪୬)ଙ୍କ ସହିତ ବନ୍ଧୁତା ଥିଲା । ସେ ୧୧ଟି ଭାଷା ପଢ଼ିପାରୁଥିଲେ ଏବଂ ୩ଟିରେ ଭାଷଣ ଦେଇପାରୁଥିଲେ ।

୧୯୧୧ରେ ହାଲ୍‌ଡେନ ଗୋଟିଏ ଗଣିତ ବୃତ୍ତି ପାଇ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ପଢ଼ିଥିଲେ ଏବଂ ଗଣିତରେ ପ୍ରଥମ ଶ୍ରେଣୀ ଅନର୍ସ ରଖି ଉତ୍ତୀର୍ଣ୍ଣ ହୋଇଥିଲେ । ଅକ୍ସଫୋର୍ଡଠାରେ ପ୍ରଥମ ବର୍ଷରେ ସେ ପ୍ରାଣୀବିଜ୍ଞାନ ଅନର୍ସର ଶେଷବର୍ଷ ଶ୍ରେଣୀରେ ମଧ୍ୟ ଯୋଗ ଦେଇଥିଲେ । ୧୯୧୧ ମସିହାରେ ଗୋଟିଏ ପ୍ରାଣୀବିଜ୍ଞାନ

ଆଲୋଚନା ଚକ୍ରରେ ହାଲଡେନ ପ୍ରକାଶିତ ତଥ୍ୟର ବିଶ୍ଳେଷଣ କରି ମେରୁଦଣ୍ଡୀ ପ୍ରାଣୀମାନଙ୍କର ଗୁଣସୂତ୍ର ସଂଯୋଗ ବିଷୟରେ ଏକ ତତ୍ତ୍ୱ ବାଢ଼ିଥିଲେ । କିନ୍ତୁ ଯଥେଷ୍ଟ ପ୍ରମାଣ ନଥବାରୁ ତାହା ୧୯୧୬ ଯାଏଁ ପ୍ରକାଶିତ ହୋଇପାରିନଥିଲା ।

୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ତେଣୁ ଆନୁଷ୍ଠାନିକ ଭାବରେ ତାଙ୍କର ବିଜ୍ଞାନ ଡିଗ୍ରୀ ପାଇବା ଆଗରୁ ହାଲ୍‌ଡେନଙ୍କୁ ଅକ୍ସଫୋର୍ଡ ଛାଡ଼ି ଇଂରେଜ ସେନାବାହିନୀରେ ଯୋଗଦେବାକୁ ହୋଇଥିଲା । ଯୁଦ୍ଧ ପରେ ସେ ଅକ୍ସଫୋର୍ଡକୁ ଫେରିଆସିଲେ ଓ ନିଉ କଲେଜରେ ଜଣେ ଫେଲୋ ଭାବରେ ଶରୀର ବିଜ୍ଞାନ ବିଷୟରେ ଅଧ୍ୟାପନା କଲେ । ଏହା ସହିତ ସେ ଶରୀର ବିଜ୍ଞାନ ଓ ଆନୁବଂଶିକ ବିଜ୍ଞାନରେ ଗବେଷଣା ଚଳାଇଲେ ।

**ବିଜ୍ଞାନ କ୍ଷେତ୍ରରେ ଅବଦାନ**

ଶରୀରକ୍ରିୟା ବିଜ୍ଞାନ, ଜୀବରସାୟନ ବିଜ୍ଞାନ ଓ ଆନୁବଂଶିକ ବିଜ୍ଞାନ ଭଳି ବିଜ୍ଞାନର ତିନୋଟି ଅଲଗା ବିଭାଗରେ ହାଲ୍‌ଡେନଙ୍କର ବିଶେଷ ଅବଦାନ ରହିଥିଲା ।

ସେ ମନୁଷ୍ୟ ଶରୀରକ୍ରିୟାର ବିଭିନ୍ନ ଦିଗ ଅଧ୍ୟୟନ କରିଥିଲେ । ଏଥିରେ ସେ ଅନେକ ସମୟରେ ନିଜକୁ ନିଜର ପରୀକ୍ଷା-ଜୀବ ଭାବରେ କାମରେ ଲଗାଉଥିଲେ । ବାସ୍ତବିକ, ହାଲ୍‌ଡେନ ଏଭଳି ନିଜେ ନିଜର 'ମୁଖ୍ୟ ଗିନିପିଗ୍' ହେବାରେ ଖ୍ୟାତି ଅର୍ଜନ କରିଥିଲେ । ରକ୍ତର କ୍ଷାରୀୟତା ନିୟନ୍ତ୍ରଣ ବିଷୟରେ ହାଲ୍‌ଡେନଙ୍କ କାମ ମୌଳିକ ପାଠ୍ୟ ପୁସ୍ତକରେ ବିଷୟବସ୍ତୁ ହୋଇଛି ।

୧୯୨୨ରେ ଫ୍ରେଡେରିକ ଗଉଲ୍ୟାଣ୍ଡ ହପ୍‌କିନ୍‌ସ (୧୮୬୧-୧୯୪୭)ଙ୍କ ନିମନ୍ତ୍ରଣ କ୍ରମେ ହାଲ୍‌ଡେନ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଜୀବରସାୟନ ବିଭାଗରେ ପ୍ରାଧ୍ୟାପକ ଭାବରେ ଯୋଗଦେଇଥିଲେ ଓ ସେଠାରେ ୧୦ବର୍ଷ କାଳ କଟାଇଥିଲେ । ସେଠାରେ ସେ ଏନ୍‌ଜାଇମର କାର୍ଯ୍ୟଧାରା ଉପରେ ବିଶେଷ ଧ୍ୟାନ ଦେଇଥିଲେ ଏବଂ କିଛି ଅଭିନବ ଗାଣିତିକ ସୂତ୍ର ପ୍ରୟୋଗ କରି ସେ ଏନ୍‌ଜାଇମ ପ୍ରକ୍ରିୟାର ବେଗ ନିରୂପଣ କରିଥିଲେ । ଜି.ଇ. ବ୍ରିଗ୍‌ସ୍‌ଙ୍କ ସହଯୋଗରେ ଗବେଷଣା କରି ହାଲ୍‌ଡେନ ଜାଣିବାକୁ ପାଇଥିଲେ ଯେ ଏନଜାଇମ୍‌ର ପ୍ରକ୍ରିୟା ଥର୍ମୋଡାଇନାମିକ୍ସର ନିୟମ ଅନୁସାରେ ଘଟିଥାଏ । ଜୀବରସାୟନ କ୍ଷେତ୍ରରେ ହାଲ୍‌ଡେନ ତାଙ୍କ ଅବଦାନ ଉପରେ ଲେଖିଥିଲେ, "ମୋର ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ବୋଧହୁଏ ହେଉଛି ଏହା ଯେ ଏବେ ସାଇଟୋକ୍ରୋମ୍ ଅକ୍ସିଡେଜ୍ ନାମରେ ଜଣା ପଦାର୍ଥଟି ଚାରା ଗଛ, ପ୍ରଜାପତି ଓ ମୂଷାମାନଙ୍କ ଦେହରେ ମିଳିଥାଏ । ଏହା ସହିତ ବାନ୍ଧିହେବା ପାଇଁ ଅମ୍ଳଜାନ ସହିତ କାର୍ବନ୍‌ମନୋକ୍‌ସାଇଡ ପ୍ରତିଯୋଗିତା

କରିଥାଏ । ତେବେ ଏହି ଆବିଷ୍କାର ସମ୍ପର୍କରେ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା ଯେ ମୁଁ କୀଟମାନଙ୍କୁ ନକାଟି ବା ନମାରି ତାଙ୍କ ମସ୍ତିଷ୍କରେ ରହିଥିବା ଏହି ପଦାର୍ଥ ବିଷୟରେ ଅନେକ କିଛି ଜାଣିପାରିଥିଲି । ଅବଶ୍ୟ ଏନ୍‌ଜାଇମ ରସାୟନର ସାଧାରଣ ନିୟମଗୁଡ଼ିକ ସମ୍ପର୍କରେ ମୋର ବାଖ୍ୟା ହୁଏତ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇପାରେ ।"

ହାଲ୍‌ଡେନ ବ୍ୟକ୍ତିସମୂହ ଆନୁବଂଶିକ ବିଜ୍ଞାନର ଅନ୍ୟତମ ପ୍ରତିଷ୍ଠାତା ଥିଲେ । ଆନୁବଂଶିକ ବିଜ୍ଞାନରେ ତାଙ୍କର ମୁଖ୍ୟ ଆବିଷ୍କାର ଥିଲା ଶଙ୍କର ପଶୁଙ୍କର ଲିଙ୍ଗ ନିର୍ଣ୍ଣୟ ନିୟମ । ଏହି ନିୟମ ଅନୁସାରେ ଯଦି ପ୍ରଥମ ପିଢ଼ିର ଶଙ୍କର ପଶୁଙ୍କ ଭିତରେ କୌଣସି ଏକ ଲିଙ୍ଗ ଦୁର୍ଲଭ, ଅନୁପସ୍ଥିତ ଅଥବା ବନ୍ଧ୍ୟା ହୋଇଥାଏ, ତେବେ ତାହାର ଯୁଗ୍ମକ ହିଁ ଭବିଷ୍ୟତ ପିଢ଼ିର ଲିଙ୍ଗ ସ୍ଥିର କରିବ *(ହେଟେରୋଗେମେଟିକ୍ ସେକ୍ସ)* । ୧୯୩୩ରେ ହାଲ୍‌ଡେନ କେମ୍ବ୍ରିଜ ଛାଡ଼ିକରି ଲଣ୍ଡନ ବିଶ୍ୱବିଦ୍ୟାଳୟ କଲେଜରେ ଯୋଗଦେଲେ ଏବଂ ସେଠାରେ ମୁଖ୍ୟତଃ ମାନବ ଆନୁବଂଶିକ ବିଜ୍ଞାନ ସମ୍ପର୍କିତ କାମରେ ନିଜକୁ ବ୍ୟସ୍ତ ରଖିଲେ । ୧୯୩୫ ମସିହାରେ ସେ ଲିଙ୍ଗୀୟ ଗୁଣସୂତ୍ର ଏକ୍ସ-କ୍ରୋମୋଜୋମ୍‌ର ଏକ ପ୍ରାଥମିକ ମାନଚିତ୍ର ପ୍ରସ୍ତୁତ କରିଥିଲେ । ସେଥିରେ ସେ ବର୍ଣ୍ଣାନ୍ଧତା, ଏକ ଚର୍ମରୋଗ ଏବଂ ଆଖିରେ ଦେଖାଯାଉଥିବା ଦୁଇ ପ୍ରକାରର ବିଶେଷତା ସୃଷ୍ଟି କରୁଥିବା ଜିନ୍ ସବୁର ସ୍ଥାନର ସୂଚନା ଦେଇଥିଲେ । ପ୍ରାକୃତିକ ଉଦ୍‌ବରଣର ଗାଣିତିକ ତତ୍ତ୍ୱ ଉପରେ ତାଙ୍କର କାମ ଆନୁବଂଶିକ ବିଜ୍ଞାନ ଓ ଜୀବବିଜ୍ଞାନର ଛାତ୍ରଛାତ୍ରୀଙ୍କ ପାଇଁ ଅତ୍ୟନ୍ତ ଉପଯୋଗୀ । ମଣିଷ ଦେହରେ ଉତ୍‌ପରିବର୍ତ୍ତନ *(ମ୍ୟୁଟେସନ୍)*ର ହାର ଆକଳନ କରିବାରେ ସେ ଥିଲେ ପ୍ରଥମ ବିଜ୍ଞାନୀ । ୧୯୩୨ ମସିହାରେ ପ୍ରକାଶିତ ତାଙ୍କର ବହି 'ବିବର୍ତ୍ତନର କାରଣ'ରେ ହାଲ୍‌ଡେନ ଏହାର ଏକ ହିସାବ ଦେଇଥିଲେ । ଆନୁବଂଶିକ ବିଜ୍ଞାନ ପ୍ରତି ତାଙ୍କର ଆଉ ଏକ ବିଶିଷ୍ଟ ଅବଦାନ ହେଲା ଆନୁବଂଶିକ ବିଜ୍ଞାନ ପତ୍ରିକା *ଜର୍ଣ୍ଣାଲ ଅଫ୍ ଜେନେଟିକ୍‌ସ୍*ର ସମ୍ପାଦନା କାର୍ଯ୍ୟ ।

ନିର୍ଜୀବ ଓ ଅମ୍ଳଜାନଶୂନ୍ୟ ଆଦିମ ପୃଥିବୀରେ ଜୀବନ କିପରି ଆରମ୍ଭ ହୋଇଥାଇପାରେ ସେ ବିଷୟରେ ହାଲଡେନ୍ ଏକ ସମ୍ଭାବ୍ୟ ଧାରାର କଳ୍ପନା କରିଥିଲେ । ଆଉ ଜଣେ ବିଜ୍ଞାନୀ ଏ· ଆଇ· ଓପାରିନ୍ ମଧ୍ୟ ସ୍ୱାଧୀନ ଭାବରେ ଠିକ ସେହି କଳ୍ପନା କରିଥିଲେ । ଏହା ଏବେ ଓପାରିନ୍-ହାଲଡେନ୍ ତତ୍ତ୍ୱ ନାମରେ ଜଣା ।

ବିଜ୍ଞାନ ଗବେଷଣା କ୍ଷେତ୍ରରେ ହାଲ୍‌ଡେନଙ୍କର ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ଗୁଣ ଥିଲା ଗୋଟିଏ ବିଷୟର ଉପକରଣ ଓ ତତ୍ତ୍ୱ ସବୁକୁ ଅନ୍ୟ କ୍ଷେତ୍ରରେ ପ୍ରୟୋଗ କରିବାରେ ତାଙ୍କର ସାମର୍ଥ୍ୟ । ସମ୍ଭବତଃ ଏହା ହିଁ ହେଉଛି ବିଜ୍ଞାନ ପାଇଁ ହାଲ୍‌ଡେନଙ୍କର ଅବଦାନ ଭିତରେ ସବୁଠାରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ।

ହାଲ୍‌ଡେନଙ୍କ ନିଜ ଭାଷାରେ ତାଙ୍କର ବୈଜ୍ଞାନିକ ଅବଦାନର ସାରମର୍ମ ହେଲା, "ମୋର ବୈଜ୍ଞାନିକ କାର୍ଯ୍ୟ ଥିଲା ବହୁବିଧ । ମନୁଷ୍ୟ ଶରୀରକ୍ରିୟା ବିଜ୍ଞାନରେ ଅତ୍ୟଧିକ ପରିମାଣର ଆମୋନିଅମ କ୍ଲୋରାଇଡ ଓ ଅନ୍ୟାନ୍ୟ ଲବଣ ଖାଇବାର ପ୍ରଭାବ ସମ୍ପର୍କୀୟ ମୋର କାର୍ଯ୍ୟ ଅଧିକ ଜଣାଶୁଣା । ସୀସା ଓ ରେଡିଅମ୍ ଧାତୁର ବିଷାକ୍ତ ପ୍ରଭାବର ଚିକିତ୍ସାରେ ଏହାର କିଛି ପ୍ରୟୋଗ ଆସିଥିଲା । ଆନୁବଂଶିକ ବିଜ୍ଞାନ କ୍ଷେତ୍ରରେ ମୁଁ ପ୍ରଥମ କରି ସ୍ତନ୍ୟପାୟୀ ପ୍ରାଣୀଙ୍କର ଗୁଣସୂତ୍ରୀୟ ସଂଯୋଗ ବାହାର କରିଥିଲି ଏବଂ ମନୁଷ୍ୟ ଗୁଣସୂତ୍ରର ମାନଚିତ୍ର ପ୍ରସ୍ତୁତ କରିଥିଲି । ପେନ୍‌ରୋଜଙ୍କ ସହଯୋଗରେ ମୁଁ ମଣିଷର ଗୁଣସୂତ୍ରରେ ଉତ୍‌ପରିବର୍ତ୍ତନର ହାର ମାପିଥିଲି । ଗଣିତରେ ମଧ୍ୟ ମୁଁ କେତେକ ଛୋଟ ଧରଣର ଆବିଷ୍କାର କରିଥିଲି ।"

### ସମ୍ମାନ ଓ ସମ୍ବର୍ଦ୍ଧନା

ହାଲ୍‌ଡେନ ୧୯୩୨ ମସିହାରେ ରୟାଲ ସୋସାଇଟିର ଫେଲୋ ଭାବରେ ନିର୍ବାଚିତ ହୋଇଥିଲେ । ଜୀବସୃଷ୍ଟିର ବିବର୍ତ୍ତନ ଅଧ୍ୟୟନର ଆଧୁନିକ ପର୍ଯ୍ୟାୟକୁ ଆରମ୍ଭ କରିଥିବାର ସ୍ୱୀକୃତିରେ ରୟାଲ ସୋସାଇଟି ଦ୍ୱାରା ୧୯୫୩ରେ ତାଙ୍କୁ ଡାରୱିନ ପଦକ ଦିଆଯାଇଥିଲା । ଫରାସୀ ସରକାର ୧୯୩୭ରେ ତାଙ୍କୁ ଲିଜିଅନ ଅଫ ଅନର ସମ୍ମାନ ପ୍ରଦାନ କରିଥିଲେ ଏବଂ ଏକାଡେ଼ମିଆ ନାଜିଓନେଲ ଦେଇ ଲିନ୍‌ସେଇ ତାଙ୍କୁ *ଫେଲଟ୍ରିନେଲି ପ୍ରାଇଜ* (୧୯୬୧) ଦେଇଥିଲେ । ତାଙ୍କୁ ମିଳିଥିବା ଅନ୍ୟ କିଛି ପୁରସ୍କାର ତଥା ସମ୍ମାନ ହେଲା – ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରୁ *ଓଲଡେ଼ନ ସ୍ମୃତି ପୁରସ୍କାର*, ଲିନିୟାନ ସୋସାଇଟିର *ଡାରୱିନ ୱାଲେସ୍ ପଦକ*, ନୃତତ୍ତ୍ୱ ପ୍ରତିଷ୍ଠାନରୁ *ହକ୍ସଲେ ସ୍ମୃତି ପଦକ* ଓ ଯୁକ୍ତରାଷ୍ଟ୍ର ଆମେରିକାର ଜାତୀୟ ବିଜ୍ଞାନ ଏକାଡେମୀରୁ *କିମ୍ବଲର ଜେନେଟିକ୍‌ସ୍ ପୁରସ୍କାର* । ୧୯୩୨ରୁ ୧୯୩୬ ପର୍ଯ୍ୟନ୍ତ ସେ ଜେନେଟିକାଲ୍ ସୋସାଇଟିର ଅଧ୍ୟକ୍ଷ ରହିଥିଲେ ।

### ଜଣେ ବିଶିଷ୍ଟ ବିଜ୍ଞାନ ଜନପ୍ରିୟକାରୀ

ବିଜ୍ଞାନକୁ ଜନପ୍ରିୟ କରିବାରେ ହାଲ୍‌ଡେନ ଜଣେ ବିଶିଷ୍ଟ କର୍ମୀ ଥିଲେ । ତାଙ୍କର ଲୋକପ୍ରିୟ ରଚନାଗୁଡ଼ିକ ବିଶେଷ ଭାବରେ ସୁଖପାଠ୍ୟ । ବିଜ୍ଞାନର ଜଟିଳ ଧାରଣା ଗୁଡ଼ିକୁ କଦର୍ଥ ନକରି ସରଳ ଭାବରେ ବୁଝାଇବାରେ ତାଙ୍କର ଦକ୍ଷତା ରହିଥିଲା । ତାଙ୍କର ରଚନା, ଭାଷଣ ଓ ରେଡ଼ିଓ ଉପସ୍ଥାପନା ଯୋଗୁଁ ବିଶ୍ୱର ସୁପରିଚିତ ବିଜ୍ଞାନୀମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ ।

ବିଜ୍ଞାନର ସାମାଜିକ ଦାୟିତ୍ୱ ଉପରେ ହାଲ୍‌ଡେନ ଖୁବ୍ ଗୁରୁତ୍ୱ ଦେଇଥିଲେ ।

ତାଙ୍କ ବିଚାରରେ ସାଧାରଣ ଲୋକଙ୍କ ପାଇଁ ବିଜ୍ଞାନକୁ ବୋଧଗମ୍ୟ କରିବା ହେଉଛି ବିଜ୍ଞାନୀମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ । ଜନସାଧାରଣଙ୍କୁ ବିଜ୍ଞାନ ବିଷୟରେ ବୁଝାଇବା ପାଇଁ ସେ ଅନେକ ନିବନ୍ଧ ରଚନା କରିଥିଲେ ।

**ବିଜ୍ଞାନ ପ୍ରସାରକଙ୍କ ହାଲ୍‌ଡେନଙ୍କ ଉପଦେଶ**

"ତୁମେ ନିଜର ଜ୍ଞାନ ବିଷୟରେ ଦେଖାଇହେବାକୁ ଚେଷ୍ଟା କରୁନାହଁ । ବିଜ୍ଞାନର କିଛି ଜଟିଳ ପ୍ରୟୋଗ କରିବାପାଇଁ କିଛି ସୂକ୍ଷ୍ମ ଓ ଗଭୀର ତତ୍ତ୍ୱ ମଧ୍ୟ ତୁମେ ଲୋକଙ୍କୁ ଦେବାକୁ ଲାଗିନାହଁ । ତୁମର ଲକ୍ଷ ହେଉଛି ସେମାନଙ୍କୁ ବିଜ୍ଞାନ ଦିଗରେ ଆଗ୍ରହୀ ଏବଂ ଉଦ୍ଦୀପିତ କରାଇବା । ଏଥିପାଇଁ ଜଣାଥିବା ସବୁ ତଥ୍ୟ ତାଙ୍କ ଆଗରେ ଥୋଇବା ଦରକାର ନାହିଁ । ତେଣୁ ଲେଖୁଥିବା ବିଷୟରେ ନିଜେ ବେଶ୍ ଅଧିକ ଜାଣିବା ଉଚିତ । ସେଥିରୁ ତୁମକୁ ବାଛିବାକୁ ହେବ କେଉଁ କଥାଗୁଡ଼ିକ ଯୋଡ଼ିଲେ ଗୋଟିଏ ସୁନ୍ଦର ଉପସ୍ଥାପନା କରିହେବ । ଏହାର ଅର୍ଥ ନୁହେଁ ଯେ ତୁମେ କେବଳ ଅଜ୍ଞ ପାଠକଙ୍କ ପାଇଁ ଲେଖୁଛ । ବରଂ ତୁମକୁ ବିଜ୍ଞାନର ଅଜଣା ବିଷୟ ସବୁକୁ ନିତିଦିନିଆ ଅନୁଭୂତି ସହିତ ଯୋଡ଼ିବାକୁ ପଡ଼ିବ ।"

"ଲେଖାଟିଏ ପୂରାକରି ଜଣେ ସାଙ୍ଗଙ୍କୁ - ସେ ବିଶେଷ ଜ୍ଞାନୀ ନହୋଇଥିଲେ ଭଲ - ପଢ଼ିବାକୁ ଦିଅ । ନହେଲେ ଲେଖାଟିକୁ ଛଅମାସ ପାଇଁ ପକାଇ ରଖିଦିଅ । ଛଅମାସ ପରେ ପଢ଼ିକରି ଦେଖ ଲେଖାଟିକୁ ତୁମେ ବୁଝିପାରୁଛ କି ନାହିଁ । ହୁଏତ ଲେଖିଲାବେଳେ ଯାହା ସରଳ ଲାଗୁଥିଲା ଏବେ ତାହା ଜଟିଳ ମନେହେଉଛି । ସେଭଳି ବାକ୍ୟଗୁଡ଼ିକୁ ସରଳ କରିବାପାଇଁ କିଛି ବାଟ ରହିଛି । ଯେପରି, କମା ବଦଳରେ ପୂର୍ଣ୍ଣଛେଦ ଦିଆଯାଇପାରିଲେ ଭଲ । ତାହା ପାଠକକୁ ନିଶ୍ୱାସ ନେବାକୁ ସୁଯୋଗ ଦେବ । ପରୋକ୍ଷ ବାକ୍ୟ ବା କ୍ରିୟା ବଦଳରେ ଏକ ପ୍ରତ୍ୟକ୍ଷ ବାକ୍ୟ ବ୍ୟବହାର କରିବା ଉଚିତ ।"

ସେ ବିଶ୍ୱାସ କରୁଥିଲେ ଯେ ପରୀକ୍ଷାଗାର ଭିତରେ କ'ଣ ହେଉଛି ସେ ବିଷୟରେ ଜାଣିବାର ଅଧିକାର ଜନସାଧାରଣଙ୍କର ରହିଛି । କାରଣ ଗବେଷଣାର ଖର୍ଚ୍ଚ ତାଙ୍କରିଠାରୁ ହିଁ ଆସୁଛି ।

**ଶିକ୍ଷା ସମ୍ପର୍କରେ ମତାମତ**

ହାତରେ କାମକରିବା ମାଧ୍ୟମରେ ଶିକ୍ଷା ଲାଭ କରିବା ଧାରାରେ ହାଲ୍‌ଡେନ ଗଭୀର ଭାବରେ ବିଶ୍ୱାସ କରୁଥିଲେ । ଏହି ବିଷୟରେ ଗୋଟିଏ ଉଦାହରଣ ଦେବାକୁ ସେ ଥରେ ଲେଖିଥିଲେ, "କେବଳ ଅଭ୍ୟାସ ଦ୍ୱାରା ହିଁ ସଂଖ୍ୟାମାନଙ୍କ ପ୍ରତି ସମ୍ବେଦନଶୀଳତା ଆସିପାରେ । ତେବେ ଏହି ଅଭ୍ୟାସ କିପରି କରାଯାଇପାରିବ ? ଉଦାହରଣ ଭାବରେ ମୁଁ ମୋର ଛାତ୍ରଛାତ୍ରୀମାନଙ୍କୁ କହିବି କୌଣସି ନିର୍ଦ୍ଦିଷ୍ଟ ହତାରେ ଥିବା ଗଛଗୁଡ଼ିକର ସଂଖ୍ୟା

ବାହାର କର । ସେମାନେ ଗଛ ଗଣିବା ଆରମ୍ଭ କଲେ କିଛି ପ୍ରକୃତ ଅସୁବିଧା ଦେଖିବାକୁ ପାଇବେ । ଯେପରି, ଏଇଟି ଗଛ ନା ବୁଦା ? କଦଳୀ ବୁଦାଟି ଗୋଟିଏ ଗଛ କି ବାରଟି ଗଛ ? ଏସବୁର ଉତ୍ତର ପାଇବା କିଛି କଷ୍ଟ କଥା ନୁହେଁ - ଯେପରି ଗୋଟିଏ କାରଖାନା ଓ ରହିବା ଘର ଭିତରେ ଫରକ ଖୋଜିବା । ମୁଁ ଭାବୁଛି ଯେ ସେହି ହତାରେ ୧୦୦ଟି ଗୁଆ ଗଛ ଅଛି । ତାହା ଭୁଲ ହୋଇପାରେ, କାରଣ ମୁଁ ଗଣିନାହିଁ । କିନ୍ତୁ ମୁଁ ଚାହେଁ ଯେ ଆମର ପିଲାମାନେ ଜାଣନ୍ତୁ ଶହେଟି ଗଛ ଥିଲେ କିପରି ଦେଖାଯିବା କଥା । କେତୋଟି ? କେତେଥର ? କେତେ ଶକ୍ତିଶାଳୀ ? ଆଦି ପ୍ରଶ୍ନ ସବୁବେଳେ ତାଙ୍କ ଆଗକୁ ଆସୁ ।"

ଅମୂର୍ତ୍ତ ବୈଜ୍ଞାନିକ ଧାରଣା ଓ ବାସ୍ତବ ଜୀବନର ଅନୁଭୂତି ଭିତରେ ଥିବା ସମ୍ପର୍କକୁ ଖୋଜିବା ପାଇଁ ସେ ତାଙ୍କର ଛାତ୍ରଛାତ୍ରୀମାନଙ୍କୁ ଉପଦେଶ ଦେଉଥିଲେ । ନିଜ ଜୀବନ ସାରା ସେ ନିଜେ ଏହା ହିଁ କରୁଥିଲେ । ସେ କହୁଥିଲେ, "ବିଜ୍ଞାନର ଅଜଣା ତଥ୍ୟ ଭିତରୁ ନିତିଦିନିଆ ଅନୁଭୂତିକୁ ସବୁବେଳେ ଫେରି ଆସୁଥାଅ ।"

ଶିକ୍ଷା ବ୍ୟବସ୍ଥା ଉପରେ ହାଲ୍‌ଡେନଙ୍କ ମତ ଆଜି ମଧ୍ୟ ପ୍ରାସଙ୍ଗିକ । ସେ କହୁଥିଲେ, "ଆମର ବର୍ତ୍ତମାନର ଶିକ୍ଷା ବ୍ୟବସ୍ଥା ପିଲାମାନଙ୍କ ପ୍ରତି ଏକ ଅନ୍ୟାୟ । କାରଣ ଏଥିରେ ଅଧିକାଂଶ ପିଲା ଉଚିତ ସୁଯୋଗ ପାଆନ୍ତିନାହିଁ । ଆହୁରି ମଧ୍ୟ ସେଥିରେ କାହାକୁ ବି ବିଜ୍ଞାନର ମାନବିକ ଦୃଷ୍ଟିକୋଣ ଆଧାରିତ ସତ୍ୟ ବିଷୟରେ ଶିକ୍ଷା ଦିଆଯାଏନାହିଁ । ବିଜ୍ଞାନ ଶିକ୍ଷା ସମ୍ପୂର୍ଣ୍ଣ ସ୍ଥିର ବା ସମାନ ଗତି ବଜାୟ ରଖୁଥିବା କୌଣସି କାଳ୍ପନିକ ପିଣ୍ଡରୁ ଆରମ୍ଭ ନହୋଇ ମଣିଷ ଦେହରୁ ଆରମ୍ଭ କରାଯିବା ଉଚିତ । ଏହି ଧାରାରେ ହିଁ ତିନି ବର୍ଷ ବୟସରୁ ମୋର ବିଜ୍ଞାନ ଶିକ୍ଷା ଆରମ୍ଭ ହୋଇଥିଲା ।"

### ରାଜନୈତିକ ଓ ସାମାଜିକ ଦୃଷ୍ଟିକୋଣ

ମଣିଷ ସମାଜର ଭଲ ପାଇଁ ହାଲ୍‌ଡେନ ବିଶେଷ ଚିନ୍ତା କରୁଥିଲେ । ଅକ୍ସଫୋର୍ଡରେ ଛାତ୍ର ଥିବାବେଳେ ସେ ଜଣେ ଉଦାରପନ୍ଥୀ ଥିଲେ । ସମୟକ୍ରମେ ବାମପନ୍ଥୀ ହୋଇ ଶେଷରେ ୧୯୪୨ ମସିହାରେ ସେ ଆନୁଷ୍ଠାନିକ ଭାବରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ମାତ୍ର ଏହା ଆଗରୁ ୧୯୩୮ ମସିହାରେ ସେ 'ବିଜ୍ଞାନ ଓ ମାର୍କ୍ସଙ୍କ ଦର୍ଶନ' ନାମକ ବହି ଏବଂ ୧୯୪୦ରେ ଇଙ୍ଗେଲ୍‌ସ୍‌ଙ୍କର 'ଡାଏଲେକ୍‌ଟିକ୍‌ସ୍ ଅଫ୍ ନେଚର' ବହିର ୧୮୮୨ ମସିହାରୁ ଅସମ୍ପୂର୍ଣ୍ଣ ଥିବା ଅନୁବାଦ ପାଇଁ ମୁଖବନ୍ଧ ଓ ଟୀକା ଲେଖିଥିଲେ ।

ଦାର୍ଶନିକ ଇଙ୍ଗେଲ୍‌ସ୍‌ଙ୍କ ମତ ହାଲଡେନ୍‌ଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ହାଲ୍‌ଡେନ ଥରେ ଲେଖିଥିଲେ, "ଡାରୱିନଙ୍କ ମତବାଦ ବିଷୟରେ ଇଙ୍ଗେଲ୍‌ସ୍‌ଙ୍କ ଚିନ୍ତା ଯଦି ଆଗରୁ ଭଲଭାବରେ ଜଣାଥା'ନ୍ତା, ମୁଁ ନିଶ୍ଚିତ ଯେ ଅନେକ ଗୋଳମାଳିଆ ଚିନ୍ତାରୁ

ମୁଁ ଅନ୍ତତଃ ରକ୍ଷା ପାଇଥା'ନ୍ତି ।" 'ଦୈନିକ ଶ୍ରମିକ' ପତ୍ରିକାର ସମ୍ପାଦନା ମଣ୍ଡଳୀର ମୁଖ୍ୟ ଭାବରେ ସେଥିରେ ତାଙ୍କର ବିଜ୍ଞାନ ସଂପର୍କିତ ୩୦୦ରୁ ଅଧିକ ଲେଖା ପ୍ରକାଶିତ ହୋଇଥିଲା । ସେହି ଲେଖାଗୁଡ଼ିକରେ ସେ ଅନେକ ସମୟରେ ତାଙ୍କର ରାଜନୈତିକ ଟିପ୍‌ପଣୀ ମଧ୍ୟ ମିଶାଉଥିଲେ । 'ରିନଲ୍‌ଡସ୍ ନିଉଜ' ନାମକ ଆଉ ଗୋଟିଏ ବାମପନ୍ଥୀ ପତ୍ରିକାରେ ତାଙ୍କର ଶହେରୁ ବେଶୀ ଲେଖା ବାହାରିଥିଲା ।

ହାଲଡେନ୍ ଚାହୁଁଥିଲେ ଯେ ତାଙ୍କୁ ମିଳିଥିବା ସୁବିଧା ସୁଯୋଗ ଅନ୍ୟ ସମସ୍ତେ ପାଆନ୍ତୁ । ଏହି କାରଣରୁ ସେ ଜଣେ ସାମ୍ୟବାଦୀ ହୋଇଥିଲେ । ହାଲଡେନ୍‌ଙ୍କର ସାମାଜିକ ଓ ରାଜନୈତିକ ଚିନ୍ତାଧାରା ତାଙ୍କର କଠୋର ସଂଖ୍ୟାତ୍ମକ ଦୃଷ୍ଟିକୋଣ, ଆନୁବଂଶିକ ବିଜ୍ଞାନ ସମ୍ପର୍କୀୟ ଗଭୀର ଜ୍ଞାନ ଓ କର୍ତ୍ତବ୍ୟନିଷ୍ଠା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲା । କମ୍ୟୁନିଷ୍ଟ ପାର୍ଟି ଭିତରେ ପ୍ରଶ୍ନ ଉଠାଇବାର ବାଧାକୁ ସେ ଗ୍ରହଣ କରିପାରିନଥିଲେ । ତେଣୁ ଧୀରେ ଧୀରେ ସେଥିରୁ ସେ ନିଜକୁ ଦୂରେଇ ନେଇଥିଲେ ।

### ହାଲଡେନ୍‌ଙ୍କ ଦୃଷ୍ଟିରେ ଆଦର୍ଶ ସମାଜ

ହାଲ୍‌ଡେନ କହିଥିଲେ, "ଗୋଟିଏ ଆଦର୍ଶ ସମାଜରେ ପ୍ରତ୍ୟେକ ମଣିଷ ନିଜ ନିଜର ଜନ୍ମଗତ ସାମର୍ଥ୍ୟର ପୂରା ଉପଯୋଗ ପାଇଁ ସୁଯୋଗ ପାଇବା ଉଚିତ । ଏଥିପାଇଁ ଆଦର୍ଶ ସମାଜର ଦୁଇଟି ଗୁଣ ରହିବା ଦରକାର । ପ୍ରଥମଟି ହେଉଛି ବ୍ୟକ୍ତିର ସ୍ୱାଧୀନତା - ଏହା ପ୍ରତ୍ୟେକ ମଣିଷକୁ ତା'ର ନିଜର ଧାରାରେ ଆଗେଇ ଯିବାରେ ସାହାଯ୍ୟ କରିବ ଏବଂ ଗୋଟିଏ ଢାଞ୍ଚାରେ ସମସ୍ତଙ୍କୁ ବଢ଼ିବାକୁ ବାଧ୍ୟ କରିବନାହିଁ । ଦ୍ୱିତୀୟ ଗୁଣଟି ହେଉଛି ସମସ୍ତଙ୍କ ପାଇଁ ସୁଯୋଗର ସମାନତା - ଏହା ବଳରେ ପ୍ରତ୍ୟେକ ସ୍ତ୍ରୀ ପୁରୁଷ ନିଜର ପ୍ରକୃତି ଓ ଦକ୍ଷତା ଅନୁସାରେ ସମାଜରେ ନିଜପାଇଁ ଉପଯୁକ୍ତ ସ୍ଥାନ ପାଇପାରିବେ ।

ହାଲ୍‌ଡେନ ଅବଶ୍ୟ ସଚେତନ ଥିଲେ ଯେ ତାଙ୍କର ସାମାଜିକ ଓ ରାଜନୈତିକ ଧାରଣାକୁ ବାସ୍ତବ ରୂପ ଦେବାପାଇଁ ସମାଜର ସବୁ ସ୍ତରରୁ ସମର୍ଥନ ଆବଶ୍ୟକ ।

### ଭାରତରେ ହାଲ୍‌ଡେନ

ସୁଏଜ କେନାଲ ଉପରେ ଅଧିକାରକୁ ନେଇ ଇଂଲଣ୍ଡ ଓ ଫ୍ରାନ୍‌ସ ୧୯୫୭ ମସିହାରେ ମିଶର ଉପରେ ଆକ୍ରମଣ କଲେ । ଏହାର ପ୍ରତିବାଦରେ ହାଲଡେ଼ନ ଇଂଲଣ୍ଡର ନାଗରିକତ୍ୱ ଛାଡ଼ିଦେଇ ଭାରତକୁ ଚାଲିଆସିଲେ । ଏହି ଦେଶରେ ଆନୁବଂଶିକ ବିଜ୍ଞାନ ଓ ଜୀବସାଂଖ୍ୟକୀ (*ବାୟୋମେଟ୍ରୀ*) କ୍ଷେତ୍ରରେ ଗବେଷଣା ପାଇଁ ଥିବା ସୁବିଧା ଯୋଗୁ ମଧ୍ୟ ସେ ଭାରତକୁ ନିଜର ନୂଆ ଦେଶ ଭାବରେ ବାଛିଥିଲେ । ସେ ପି· ସି· ମହାଲନୋବିସଙ୍କ

ନିମନ୍ତ୍ରଣରେ ଭାରତୀୟ ପରିସଂଖ୍ୟାନ ପ୍ରତିଷ୍ଠାନ (ଆଇ· ଏସ· ଆଇ·) କଲିକତାରେ ଯୋଗ ଦେଇଥିଲେ । ସେଠାରେ ସେ ସଂଖ୍ୟାତ୍ମକ ଜୀବବିଜ୍ଞାନ ବିଷୟରେ ତାତ୍ତ୍ୱିକ ଓ ପ୍ରୟୋଗାତ୍ମକ ଗବେଷଣା ଆରମ୍ଭ କଲେ । ସେଠାରେ ପରିସଂଖ୍ୟାନରେ ସ୍ନାତକ ପାଠ୍ୟକ୍ରମର ରୂପରେଖ ସ୍ଥିର କରିବାରେ ମଧ୍ୟ ସେ ସାହାଯ୍ୟ କରିଥିଲେ ।

ଭାରତୀୟ ପରିସଂଖ୍ୟାନ ପ୍ରତିଷ୍ଠାନ ସହିତ ନିଜର ସଂପର୍କ ବିଷୟରେ ହାଲ୍‌ଡେନଙ୍କର ମତ ଥିଲା, "ମୁଁ ଏହି ପ୍ରତିଷ୍ଠାନ ପାଖରେ ବିଶେଷ ଭାବରେ ଋଣୀ । କିଛି ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ପାଇଁ ସୁଯୋଗ ପାଇଥିବାରୁ ମୁଁ ସବୁଠାରୁ ବେଶୀ କୃତଜ୍ଞ । ସେହି ଆବିଷ୍କାର ହେଉଛନ୍ତି ମୋଠାରୁ ବୟସରେ କମ୍ ଅନେକ ଗବେଷକ ଯେଉଁମାନେ ବୈଜ୍ଞାନିକ ଗବେଷଣାର ମହାନ ପରମ୍ପରାକୁ ଆଦରି ନେଇଛନ୍ତି ।

୧୯୬୧ ମସିହାରେ ସେ ଏହି ପ୍ରତିଷ୍ଠାନରୁ ଇସ୍ତଫା ଦେଲେ ଏବଂ କାଉନସିଲ୍ ଫର୍ ସାଇଣ୍ଟିଫିକ୍ ଆଣ୍ଡ ଇଣ୍ଡଷ୍ଟ୍ରିଆଲ୍ ରିସର୍ଚ୍ଚ ର ଆର୍ଥିକ ସହାୟତା ଓ କିଛି ସହକର୍ମୀଙ୍କ ସହଯୋଗରେ ନିଜ ଘରେ ଗୋଟିଏ ଗବେଷଣା କେନ୍ଦ୍ର ଖୋଲିଲେ । ୧୯୬୨ ମସିହାରେ ସେ ଭୁବନେଶ୍ୱରକୁ ଆସି ଆନୁବଂଶିକ ବିଜ୍ଞାନ ଓ ଜୀବସାଂଖ୍ୟିକୀ ବିଷୟରେ ଗୋଟିଏ ଗବେଷଣାଗାର ପ୍ରତିଷ୍ଠା କରିଥିଲେ ।

ହାଲ୍‌ଡେନ ଭାରତୀୟ ସଂସ୍କୃତିକୁ ଖୁବ୍ ପସନ୍ଦ କରୁଥିଲେ । ଆଧୁନିକ ବିଜ୍ଞାନ ସହିତ ଏହାର ସଂପର୍କ ଉପରେ ସେ ଅନେକ ନିବନ୍ଧ ଲେଖିଥିଲେ । ଭାରତୀୟ ଦର୍ଶନରେ ସେ ଗଭୀର ଅଧ୍ୟୟନ କରିଥିଲେ । ସଂସ୍କୃତ ଭାଷାରେ ମଧ୍ୟ ତାଙ୍କର ଭଲ ଜ୍ଞାନ ଥିଲା । ୧୯୬୧ ମସିହାରେ ସେ ଭାରତୀୟ ନାଗରିକ ହୋଇଥିଲେ ।

**ହାଲ୍‌ଡେନଙ୍କର ଉପାଦେୟ ରଚନା**

ହାଲଡେନ ଅନେକ ବିଷୟରେ ଲେଖୁଥିଲେ । ୧୯୬୪ ମସିହାରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେ ନିରବଚ୍ଛିନ୍ନ ଭାବରେ ଲେଖିଚାଲିଥିଲେ । ଏହାର ଫଳ ଥିଲା ବିଜ୍ଞାନ କାହାଣୀ ଓ ପିଲାଙ୍କ ଗପ ସହିତ ମୋଟରେ ୨୪ଟି ବହି, ପ୍ରାୟ ୪୦୦ ବୈଜ୍ଞାନିକ ଗବେଷଣା ପତ୍ର ଓ ଅନେକ ଲୋକପ୍ରିୟ ବିଜ୍ଞାନ ନିବନ୍ଧ । ନିଜର ରଚନା ବିଷୟରେ ହାଲ୍‌ଡେନ ଲେଖିଥିଲେ, "ବିଜ୍ଞାନ ବହି ଛଡ଼ା ମୁଁ ଅନେକ ଜନପ୍ରିୟ ଲେଖା ଲେଖିଛି । ତାହା ଭିତରେ ରହିଛି ପିଲାମାନଙ୍କ ପାଇଁ ଗୋଟିଏ ଗପବହି । ମୋ ବିଚାରରେ ଜଣେ ବିଜ୍ଞାନୀ ନିଜର ସାଧ୍ୟମତେ ବିଜ୍ଞାନକୁ ସାଧାରଣ ଲୋକଙ୍କ ପାଇଁ ବୋଧଗମ୍ୟ କରିବା ଉଚିତ । ବିଜ୍ଞାନକୁ ଲୋକପ୍ରିୟ କରିବା ପାଇଁ ମୁଁ ମୋର ସାଧ୍ୟମତେ ଚେଷ୍ଟା କରିଛି ।"

**ତାଙ୍କର ଗୁରୁତ୍ୱପୂର୍ଣ୍ଣ ବହିଗୁଡ଼ିକ ଭିତରେ ରହିଛି:**

*ଡିଡାଲସ; ବା ବିଜ୍ଞାନ ଓ ଭବିଷ୍ୟତ (୧୯୨୪); କଲିନିକ୍‌ସ: ରାସାୟନିକ ଯୁଦ୍ଧର ସମର୍ଥନରେ (୧୯୨୫); ଶେଷ ରାୟ (୧୯୨୭); ପ୍ରାଣୀ ଜୀବବିଜ୍ଞାନ (୧୯୨୭, ଜେ· ଏସ· ହକ୍ସଲେଙ୍କ ସହିତ); ସମ୍ଭାବ୍ୟ ଦୁନିଆ ଓ ଅନ୍ୟାନ୍ୟ ନିବନ୍ଧ (୧୯୨୭); ଜୀବନର ଆରମ୍ଭ (ରେସନାଲିଷ୍ଟ ବାର୍ଷିକୀ ୧୯୨୯, ପୃ·୩-୧୦), ବିଜ୍ଞାନ ଓ ନୀତିଶାସ୍ତ୍ର (୧୯୨୮); ଏନଜାଇମ୍‌ସ (୧୯୩୦); ମନୁଷ୍ୟର ବୈଷମ୍ୟ ଓ ଅନ୍ୟାନ୍ୟ ନିବନ୍ଧ (୧୯୩୨); ବିଜ୍ଞାନ ଓ ମନୁଷ୍ୟ ଜୀବନ (୧୯୩୩); ତଥ୍ୟ ଓ ବିଶ୍ୱାସ (୧୯୩୪); ବିବର୍ତ୍ତନର କାରଣ (୧୯୩୩); ବିଜ୍ଞାନ ଓ ଅଲୌକିକତା (୧୯୩୫, ଏ· ଲନଙ୍କ ସହିତ); ମୋର ବନ୍ଧୁ ଶ୍ରୀ ଲିକୀ (୧୯୩୭); ପିଲାଙ୍କ ପାଇଁ ମାର୍କ୍ସୀୟ ଦର୍ଶନ ଓ ବିଜ୍ଞାନ (୧୯୩୮); ବଂଶାନୁକ୍ରମ ଓ ରାଜନୀତି (୧୯୩୮); ବିଜ୍ଞାନ ଓ ଆପଣ (୧୯୩୯); ଦୈନନ୍ଦିନ ଜୀବନରେ ବିଜ୍ଞାନ (୧୯୪୦); ଡାଏଲେକ୍‌ଟିକ୍‌ସ୍ ଅଫ୍ ନେଚର ପାଇଁ ମୁଖବନ୍ଧ ଓ ଟୀକା (ଏଫ୍· ଏଙ୍ଗେଲ୍‌ସ୍, ସି· ଦତ୍ତଙ୍କ ଅନୁବାଦ ଓ ସମ୍ପାଦନା, ୧୯୪୦); ଶାନ୍ତି ଓ ଯୁଦ୍ଧରେ ବିଜ୍ଞାନ (୧୯୪୦); ଆନୁବଂଶିକ ବିଜ୍ଞାନରେ ନୂଆ ଦିଗ (୧୯୪୧); ବିଜ୍ଞାନର ଅଗ୍ରଗତି (୧୯୪୭); ଜୀବନ କ'ଣ (୧୯୪୭) ।*

**ଶେଷ ଇଚ୍ଛା**

ହାଲ୍‌ଡେନ ୧୯୬୪ ଡିସେମ୍ବର ୧ରେ ମୃତ୍ୟୁବରଣ କରିଥିଲେ । ତାଙ୍କର ଇଚ୍ଛାପତ୍ର ଅନୁସାରେ ତାଙ୍କର ମୃତ ଶରୀର କାକିନାଡ଼ାର ରଙ୍ଗରାୟ ମେଡ଼ିକାଲ କଲେଜକୁ ପଠାଯାଇଥିଲା । ସେହି ଇଚ୍ଛାପତ୍ରରେ ସେ ଲେଖିଥିଲେ, "ମୋର ଜୀବନ କାଳରେ ଏହି ଦେହ ଦୁଇଟି ଉଦ୍ଦେଶ୍ୟ ପାଇଁ ବ୍ୟବହୃତ ହୋଇଛି । ମୃତ୍ୟୁ ପରେ, ମୁଁ ରହେ ବା ନରହେ, ଏହା ମୋର କୌଣସି କାମରେ ଆସିବ ନାହିଁ । ତେଣୁ ମୁଁ ଚାହେଁ ଯେ ଅନ୍ୟମାନଙ୍କ ଦ୍ୱାରା ଏହା ବ୍ୟବହୃତ ହେଉ । ଏହାର ଶୀତଳୀକରଣ ଯଦି ସମ୍ଭବ ହୁଏ, ତାହାର ଖର୍ଚ୍ଚ ମୋର ସମ୍ପତ୍ତି ବହନ କରିବ ।"

**ହାଲ୍‌ଡେନଙ୍କ ଜୀବନ ଓ କୃତିର କେତେକ ସୂଚନାତ୍ମକ ପ୍ରକାଶନ:**


୧· ଏନ୍· ମିଚିସନ୍, *ଦି କଙ୍କରଡ,* ଲଣ୍ଡନ: ଜନାଥନ କେପ୍ ୧୯୨୩ । (ନୋଆମି ମିଚିସନ୍ ଜେବିଏସ୍ ହାଲ୍‌ଡେନଙ୍କ ଭଉଣୀ ଥିଲେ) ।

୨· ଏନ୍, ମିଚିସନ୍, *ଦି ବୁଲ୍ ଆଣ୍ଡ କାଉସ,* ଲଣ୍ଡନ: ଜନାଥନ କେପ୍, ୧୯୪୭ ।

୩· ହାଲ୍‌ଡେନ, ଏଲ୍· କେ·, *ଫ୍ରେଣ୍ଡ୍‌ସ ଓ କିଣ୍ଡ୍ରେଡ,* ଲଣ୍ଡନ: ଫେବର ଆଣ୍ଡ ଫେବର ଲି·, ୧୯୬୧ । (ହାଲ୍‌ଡେନଙ୍କ ମାତାଙ୍କ ସ୍ମୃତିଲିପି) ।

୪· ହାଲ୍‌ଡେନ, ଜେ· ବି· ଏସ୍·, *ଆନ୍ ଅଟୋବାୟୋଗ୍ରାଫି ଇନ୍ ବ୍ରିଫ୍,* ବମ୍ବେ: ଇଲଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆ, ୧୯୬୧ ।

୫· *ସାଇନ୍‌ସ ରିପୋର୍ଟର,* ନୂଆଦିଲ୍ଲୀ: ପ୍ରକାଶନ ଓ ସୂଚନା ନିର୍ଦ୍ଦେଶାଳୟ (ବର୍ତ୍ତମାନ ବିଜ୍ଞାନ ଯୋଗାଯୋଗର ରାଷ୍ଟ୍ରୀୟ ପ୍ରତିଷ୍ଠାନ), ୨, ୧୯୬୫, (ହାଲଡେନଙ୍କ ଜୀବନ ଓ କୃତି ଉପରେ ଲେଖାଗୁଡ଼ିକର ସ୍ୱତନ୍ତ୍ର ସଂଖ୍ୟା) ।

୬· ଏନ୍· ଡବ୍‌ଲ୍ୟୁ· ପାଇରି, *ବାଓଗ୍ରାଫିକାଲ ମେମୋଏରସ୍ ଅଫ୍ ଫେଲୋଜ ଅଫ୍ ଦି ରୟାଲ ସୋସାଇଟି,* ଲଣ୍ଡନ, ୧୨, ୧୯୬୬ ।

୭· ଦ୍ରୋଣମରାଜୁ, କେ· ଆର୍, (ସମ୍ପାଦକ), *ହାଲ୍‌ଡେନ ଏଣ୍ଡ ମଡର୍ଣ୍ଣ ବାୟୋଲଜି,* ବାଲ୍‌ଟିମୋର୍: ଜନ୍‌ସ ହପ୍‌କିନ୍‌ସ ୟୁନିଭର୍‌ସିଟି ପ୍ରେସ୍, ୧୯୬୮ ।

୮· ରୋନାଲ୍ଡ ଡବ୍‌ଲ୍ୟୁ· କ୍ଲାର୍କ, *ଜେ·ବି·ଏସ୍·: ଦି ଲାଇଫ୍ ଆଣ୍ଡ ୱାର୍କ ଅଫ୍ ଜେ· ବି· ଏସ୍· ହାଲ୍‌ଡେନ,* ନିୟୁୟର୍କ: ହଡ୍‌ଡର ଏଣ୍ଡ ଷ୍ଟଟନ ଲି·, ୧୯୬୮ ।

୯· ◌ାଇଟ ଏସ୍·, *ହାଲ୍‌ଡେନ୍‌ସ୍ କଣ୍ଟ୍ରିବୁସନ୍ ଟୁ ପପୁଲେସନ୍ ଏଣ୍ଡ ଇଭଲୁସନାରୀ ଜେନେଟିକ୍‌ସ୍,* ପ୍ରୋକ୍· XII ଇଣ୍ଟର୍‌ନ୍· ଜେନେଟ୍· ୩, ୪୪୫-୪୫୧, ୧୯୬୯ ।

୧୦· ଦ୍ରୋଣମରାଜୁ, କେ· ଆର୍·, ହାଲ୍‌ଡେନ: *ଦି ଲାଇଫ୍ ଆଣ୍ଡ ୱର୍କ ଅଫ୍ ଜେ· ବି· ଏସ୍· ହାଲ୍‌ଡେନ ଉଇଥ ସ୍ପେସାଲ ରେଫରେନ୍‌ସ ଟୁ ଇଣ୍ଡିଆ,* ଆବରଦିନ ୟୁନିଭର୍‌ସିଟି ପ୍ରେସ୍-ପର୍ଗାମନ ପ୍ରେସ୍, ୧୯୮୫ ।

୧୧· ଦ୍ରୋଣମରାଜୁ, କେ· ଆର୍· (ସମ୍ପାଦକ), *ସିଲେକ୍‌ଟେଡ୍ ଜେନେଟିକ୍‌ସ୍ ପେପର୍‌ସ୍ ଅଫ୍ ଜେ· ବି· ଏସ୍· ହାଲ୍‌ଡେନ,* ଗାରଲ୍ୟାଣ୍ଡ ପବ୍‌ସ୍·, ନିୟୁୟର୍କ, ୧୯୯୦ ।

୧୨· *ଜେ· ବି· ଏସ୍· ହାଲ୍‌ଡେନ: ଏ ଟ୍ରିବ୍ୟୁଟ୍,* କଲିକତା: ଭାରତୀୟ ପରିସଂଖ୍ୟାନ ପ୍ରତିଷ୍ଠାନ, ୧୯୯୨ ।

# ଉପକ୍ରମ

"ମୋର ବନ୍ଧୁ ଶ୍ରୀଲିକୀ" ପୁସ୍ତକ ସମ୍ପର୍କରେ ମୁଁ ପ୍ରଥମେ ଜାଣିଲି ରୋନାଲ୍ଡ କ୍ଲାର୍କ ଲେଖିଥିବା ଜେ·ବି·ଏସ୍· ହାଲଡେନଙ୍କର ଏକ ସୁପାଠ୍ୟ ଜୀବନୀରୁ। ମୁଁ ସେତେବେଳେ ପୁନେଠାରେ ଥିଲି । ପୁନେ ବିଶ୍ୱବିଦ୍ୟାଳୟ ଗ୍ରନ୍ଥାଳୟରେ ଉକ୍ତ ପୁସ୍ତକ ନଥିଲା । ବ୍ରିଟିଶ କାଉନ୍‌ସିଲ ଗ୍ରନ୍ଥାଳୟରେ ଦେଖିବାକୁ ମୋର କେତେକ ବନ୍ଧୁ ପରାମର୍ଶ ଦେଲେ । ସ୍ଥାନାଭାବରୁ ସେହି ଗ୍ରନ୍ଥାଳୟରେ ଅତି ପୁରୁଣା ଓ ଛିଣ୍ଡି ଯାଇଥିବା ବହିଗୁଡ଼ିକୁ ବାହାର କରି ଦିଆଯାଏ । ଅଧିକ ଲୋକପ୍ରିୟ ହୋଇଥିବା ବହିଗୁଡ଼ିକ ବେଶି ଥର ପଢ଼ାଯାଏ, ତେଣୁ ସେଗୁଡ଼ିକ ବେଶି ଛିଣ୍ଡେ ଏବଂ ପ୍ରଥମେ ଫିଙ୍ଗାଯାଏ । ମୋର ମନେହୁଏ ଯେ "ମୋର ବନ୍ଧୁ ଶ୍ରୀଲିକୀ" ବହିର ଅବସ୍ଥା ଏହା ହିଁ ହୋଇଥିବ । ସୌଭାଗ୍ୟକୁ ହାଇଦ୍ରାବାଦସ୍ଥିତ *ସେଣ୍ଟର ଫର ସେଲୁଲାର ଏଣ୍ଡ ମଲିକୁଲାର ବାୟୋଲୋଜୀ* ଠାରେ ଥିବା ହାଲଡେନଙ୍କ ପୁସ୍ତକ ସଂଗ୍ରହରୁ ସେହି ବହିର ଏକ ଜେରକ୍ସ କପି ପ୍ରଫେସର ବାଳସୁବ୍ରମନିୟମ୍‌ଙ୍କ ସାହାଯ୍ୟରେ ପାଇପାରିଥିଲି । ହାଲ୍‌ଡେନଙ୍କ ପତ୍ନୀ ହେଲେନ୍ ସ୍ପରୱେଙ୍କ ମୃତ୍ୟୁ ପରେ ହାଇଦ୍ରାବାଦର ଆଞ୍ଚଳିକ ଗବେଷଣାଗାର ହାଲ୍‌ଡେନଙ୍କର ସଂଗ୍ରହ କରିଥିବା ପୁସ୍ତକଗୁଡ଼ିକୁ ପାଇଥିଲା ।

୧୯୩୭ ମସିହାରେ "ମୋର ବନ୍ଧୁ ଶ୍ରୀଲିକୀ" ପ୍ରଥମେ ପ୍ରକାଶିତ ହୋଇଥିଲା । ଏହା ଥିଲା ପିଲାମାନଙ୍କ ପାଇଁ ହାଲ୍‌ଡେନଙ୍କ ଲିଖିତ ଏକମାତ୍ର ପୁସ୍ତକ । ହାଲ୍‌ଡେନଙ୍କ ମନଗଢ଼ା ଯାଦୁକର ଶ୍ରୀ ଲିକୀଙ୍କର ପ୍ରହେଳିକାମୟ ଚରିତ୍ର ପିଲାମାନେ ଆଦୌ ଭୁଲିପାରିବେ ନାହିଁ । ତେଣୁ ପୁସ୍ତକଟିର ପ୍ରକାଶନ ପରେ ୨୫ ବର୍ଷ ଧରି ଭୁବନେଶ୍ୱରଠାରେ ୧୯୬୪ ମସିହାରେ ତାଙ୍କର ମୃତ୍ୟୁ ହେବା ପର୍ଯ୍ୟନ୍ତ ବିଶ୍ୱର ବହୁଦେଶରୁ ପିଲାମାନଙ୍କର ଶହ ଶହ ପତ୍ର ଆସି ହାଲ୍‌ଡେନଙ୍କ ପାଖରେ ପହଞ୍ଚିଥିଲା । ଏହାର ଅନେକ ଗଳ୍ପ ହିନ୍ଦୀ ଭାଷାରେ ଅନୂଦିତ ହୋଇ "ଏକଲବ୍ୟ" ଦ୍ୱାରା ପ୍ରକାଶିତ "ଚକମକ" ପତ୍ରିକାରେ ସ୍ଥାନିତ ହୋଇଥିଲା । କେରଳ ଶାସ୍ତ୍ର ସାହିତ୍ୟ ପରିଷଦ ଦ୍ୱାରା ମଧ୍ୟ ଏହାର ମାଲୟାଲମ ଭାଷାନ୍ତର ହୋଇଛି ।

ହାଲ୍‌ଡେନ ଜଣେ ସାହସୀ ପରୀକ୍ଷକ ଥିଲେ ଏବଂ ଅନେକ ସମୟରେ ସେ ନିଜ ଉପରେ ହିଁ ପରୀକ୍ଷା ଚଳାଉଥିଲେ । କେତେଥର ସେ ଅଧିକ ପରିମାଣର କାର୍ବନ ମନୋକ୍ସାଇଡ୍ ଥିବା କୋଠରୀରେ ନିଜକୁ ବନ୍ଦକରି ରଖୁଥିଲେ । ଅପସ୍ମାର ବାତରୋଗ ଭଲ ହେଉଛି କି ନାହିଁ ଜାଣିବା ପାଇଁ ଥରେ ସେ ଖାଇବା ସୋଡ଼ା ଓ ଲବଣାମ୍ଳ ପିଇଦେଇଥିଲେ । ସେ ନିଜେ ଲେଖିଛନ୍ତି, "ମୁଁ ଭାବୁଛି ମୋର ବୈଜ୍ଞାନିକ ଜୀବନ ଦୁଇ ବର୍ଷ ବୟସରୁ ଆରମ୍ଭ ହୋଇଥିଲା । ସେତେବେଳ ମୁଁ ପିତାଙ୍କର ବିଜ୍ଞାନାଗାର ଚଟାଣ ଉପରେ ଖେଳୁଥିଲି ଏବଂ ପିତାଙ୍କର ବିଭିନ୍ନ ଜଟିଳ ଖେଳ, ଯାହାକୁ ସେ ପରୀକ୍ଷା କହୁଥିଲେ, ସବୁ ଦେଖୁଥିଲି । ଅବଶ୍ୟ ସେସବୁର ନିୟମକାନୁନ ସେତେବେଳେ ମୁଁ ବୁଝୁନଥିଲି ।"

ଅଦ୍ଭୁତ ସ୍ମରଣ ଶକ୍ତି ଓ ଅସୀମ କଳ୍ପନାର ଅଧିକାରୀ ଏହି ମନୁଷ୍ୟଟି ବିଜ୍ଞାନ, ଦର୍ଶନ ଓ ସାହିତ୍ୟରେ ସମାନ ଭାବରେ ଜ୍ଞାନୀ ଥିଲେ ଏବଂ ଭାରତୀୟ ସଂସ୍କୃତିକୁ ଶ୍ରଦ୍ଧାର ସହିତ ଆପଣାର କରିଥିଲେ ।

ବ୍ରିଟେନର ସୁଏଜ କେନାଲ ଆକ୍ରମଣ ତାଙ୍କୁ ଖୁବ୍ କ୍ଷୁବ୍ଧ କରିଥିଲା । ତେଣୁ ୧୯୫୭ ମସିହାରେ ନିଜ ପତ୍ନୀଙ୍କ ସହିତ ସେ ଭାରତକୁ ଚାଲି ଆସିଥିଲେ । ସେ ଯେଉଁ ପ୍ରକାରର ଗବେଷଣା କରିବାକୁ ଚାହୁଁଥିଲେ, ତାହା ପାଶ୍ଚାତ୍ୟ ଦେଶମାନଙ୍କ ଅପେକ୍ଷା ଭାରତରେ ଅଧିକ ସୁବିଧାଜନକ ହେବ ବୋଲି ସେ ମନେ କରିଥିଲେ । ସେ କଲିକତାରେ ଥିବା ଭାରତୀୟ ପରିସଂଖ୍ୟାନ ପ୍ରତିଷ୍ଠାନରେ ଯୋଗ ଦେଇଥିଲେ । ପରେ ଭୁବନେଶ୍ୱରରେ ଥିବାବେଳେ ସେ କ୍ୟାନ୍‌ସର ରୋଗାକ୍ରାନ୍ତ ହୋଇଥିଲେ । ୧୯୬୪ ମସିହାରେ ଭୁବନେଶ୍ୱରଠାରେ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ଭେଷଜ ବିଜ୍ଞାନର ବିକାଶ ପାଇଁ ସେ ନିଜ ଦେହକୁ ଦାନ କରିଥିଲେ ।

"ମୋର ବନ୍ଧୁ ଶ୍ରୀଲିକୀ" ବହିକୁ ତିନି ପୁରୁଷ ଧରି ପିଲାମାନେ ଉପଭୋଗ କରିଆସିଛନ୍ତି । ଏପ୍ରକାର ପୁସ୍ତକ ସର୍ବଦା ଆନନ୍ଦଦାୟକ । ଏହି ପ୍ରଥମ ଭାରତୀୟ ସଂସ୍କରଣ ପରେ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ ହୋଇ ଆଦର ଲାଭ କରିବ ବୋଲି ମୋର ଆଶା ।

ଅରବିନ୍ଦ ଗୁପ୍ତା



# ଜଣେ ଯାଦୁକରଙ୍କ ସହିତ ଭୋଜନ

# ଜଣେ ଯାଦୁକରଙ୍କ ସହିତ ଭୋଜନ

ମୁଁ ମୋ ଜୀବନରେ କେତେ ବିଚିତ୍ର ପ୍ରକାରର ଭୋଜନ କରିଛି । ଗୋଟିଏ ଖଣି ଭିତରେ କିମ୍ବା ମସ୍କୋରେ କିମ୍ବା ଜଣେ କୋଟିପତିଙ୍କ ସହିତ ଭୋଜନ କରିବାର ଅନୁଭୂତି ମୁଁ ତୁମମାନଙ୍କୁ କହିପାରନ୍ତି । ମାତ୍ର ମୁଁ ଭାବୁଛି ଜଣେ ଯାଦୁକର ସହିତ ଏକ ରାତ୍ରିଭୋଜନର କଥା କହିଲେ ତୁମକୁ ବେଶୀ ମଜା ଲାଗିବ । କାରଣ ଏହା ବେଶୀ ଅସାଧାରଣ । ଲୋକେ ଏପରି ଭୋଜନ କ୍ୱଚିତ କରିଥା'ନ୍ତି । କାରଣ ବହୁତ କମ ଲୋକ କୌଣସି ଯାଦୁକରଙ୍କୁ ଭଲ ଭାବରେ ଜାଣନ୍ତି । ତା'ଛଡ଼ା ଇଂଲଣ୍ଡରେ ବେଶୀ ସଂଖ୍ୟାରେ ଯାଦୁକର ମଧ୍ୟ ନାହାନ୍ତି । ଅବଶ୍ୟ ମୁଁ ପ୍ରକୃତ ଯାଦୁକରମାନଙ୍କ କଥା କହୁଛି । କେତେକ ଅସାଧୁ ଲୋକ ନିଜକୁ ଯାଦୁକର ବୋଲି କହନ୍ତି । ସେମାନେ ଅବଶ୍ୟ ଭାରି ଚତୁର ଲୋକ । କିନ୍ତୁ ପ୍ରକୃତ ଯାଦୁକରମାନେ ଯାହା କରନ୍ତି, ସେମାନେ ତାହା କରିପାରନ୍ତି ନାହିଁ । ସେମାନେ ଗୋଟିଏ ଠେକୁଆକୁ ପାଣିରେ ପହଁରୁଥିବା ମାଛରେ ପରିଣତ କରିପାରନ୍ତି । କିନ୍ତୁ ତାହା ଗୋଟିଏ ଘୋଡ଼ଣୀ ତଳେ ବା କାହା ଆଢୁଆଳରେ କରନ୍ତି, ଯେପରି କେହି ଦେଖିପାରିବେ ନାହିଁ । କିନ୍ତୁ ଜଣେ ପ୍ରକୃତ ଯାଦୁକର ଲୋକମାନଙ୍କ ଆଖି ଆଗରେ ଗୋଟିଏ ଗାଈକୁ ପୁରୁଣାକାଳିଆ ଘଣ୍ଟାରେ ପରିଣତ କରିଦେଇପାରିବେ । ଏହା ଏକ କଠିନ କାର୍ଯ୍ୟ ଏବଂ କେହି ଏ କାମ ଦିନକୁ ଦୁଇଥର ଓ ସପ୍ତାହରେ ଛଅଦିନ କରିପାରନ୍ତି ନାହିଁ ଯେମିତି ଅସାଧୁ ଯାଦୁକରମାନେ ମନ୍ତ୍ର ପଢ଼ି ଠେକୁଆକୁ ସୁନ୍ଦର ମାଛରେ ପରିଣତ କରନ୍ତି ।

ମୁଁ ଯେତେବେଳେ ପ୍ରଥମେ ଶ୍ରୀ ଲିକୀଙ୍କୁ ଦେଖିଲି, ସେ ଜଣେ ଯାଦୁକର ବୋଲି ଅନୁମାନ କରିପାରିନଥିଲି । ମୁଁ ତାଙ୍କୁ ଏମିତି ଦେଖିଥିଲି । ଦିନେ ଉପର ବେଳା ପ୍ରାୟ ପାଞ୍ଚଟା ବେଳକୁ ମୁଁ *ହେ ମାର୍କେଟ* ଆଡ଼େ ଯାଉଥିଲି । ରାସ୍ତା ମଝିରେ ଗୋଟିଏ ବତୀଖୁଣ୍ଟ ପାଖରେ ମୁଁ ଅଟକି ରହିଗଲି । କିନ୍ତୁ ମୋ ସାଙ୍ଗରେ ରାସ୍ତା ପାରିହେଉଥିବା ଟିକି ମଣିଷଟିଏ ଆଗକୁ ମାଡ଼ିଚାଲିଲେ । ଗୋଟିଏ ବସ୍ ପାହାଡ଼ ଉପରୁ ଗଡ଼ିଆସୁଥିବାର ଦେଖି ସେ ହଠାତ ପଛକୁ ଡେଇଁ ପଡ଼ିଲେ । ଏପରି କରିବା ଏକ ବୋକାମୀ, କାରଣ ସେ ପଛରୁ

ଆସୁଥିବା ଏକ କାର୍ ଆଗରେ ପଡ଼ିଲେ । ଯଦି ମୁଁ ତାଙ୍କର କୋଟ୍‌କୁ ଜାବୁଡ଼ି ଧରି ଭିଡ଼ି ଆଣିନଥାନ୍ତି, ସେ କାର୍ ତାଙ୍କୁ ଧକ୍କା ଦେଇଥା'ନ୍ତା । ଅବଶ୍ୟ ଗାଡ଼ି ଚାଳକ ବ୍ରେକ୍ ଦେଲେ, କିନ୍ତୁ ବର୍ଷା ଯୋଗୁ ରାସ୍ତା ଖସଡ଼ା ଥିବାରୁ ଗାଡ଼ିଟି କିଛି ବାଟ ଘୁଷୁଡ଼ି ଗଲା ।

ଟିକି ମଣିଷଟି ଅନେକ କୃତଜ୍ଞତା ଜଣାଇଲେ, ମାତ୍ର ସେ ଖୁବ୍ ଡରି ଯାଇଥିଲେ । ତେଣୁ ମୋ ହାତକୁ ଧରି ସେ ରାସ୍ତା ପାରି ହେଲେ ଏବଂ ଅଳ୍ପ ଦୂରରେ ଥିବା ତାଙ୍କ ଘରକୁ ଗଲେ । ମୁଁ କିନ୍ତୁ ତାଙ୍କ ଠିକଣା କହିବି ନାହିଁ କାରଣ ତାଙ୍କ ଘରକୁ ଯାଇ ତୁମେ ହଇରାଣ କରିବ । ସେ ବିରକ୍ତ ହେଲେ ତୁମେ ନିଶ୍ଚୟ ଅସୁବିଧାରେ ପଡ଼ିବ । ଅସୁବିଧା ମାନେ, ସେ ହୁଏତ ତୁମ କାନକୁ ବନ୍ଧାକୋବି ପତ୍ର ପରି ବଡ଼ କରିଦେବେ ବା ତୁମ ମୁଣ୍ଡବାଳକୁ ନେଳିଆ କରିଦେବେ କିମ୍ବା ବାଁ ପାଦକୁ ଡାହାଣ ପାଦ, ଏମିତି କିଛି କରିଦେବେ । ଯେଉଁ ଲୋକ ତୁମଙ୍କୁ ଦେଖିବ, ସେ ହସି ଉଠିବ ଓ ତୁମକୁ ହାତୀ-କାନିଆ ବା ନେଳି-ମୁଣ୍ଡିଆ ଭଳି ଥଟ୍ଟାଳିଆ ନାଁରେ ଡାକିବ ।

ସେ କହିଲେ, "ଆଜିକାଲିର ଗାଡ଼ିମଟର ସାଙ୍ଗରେ ମୋର ପଡ଼େନାହିଁ । ବଡ଼ ବସଗୁଡ଼ାକ ଦେଖିଲେ ମୋତେ ଡର ମାଡୁଛି । ଯଦି ଲଣ୍ଡନରେ ମୋର କିଛି କାମ ନଥା'ନ୍ତା । ତେବେ ମୁଁ ଯେଉଁଠି ରାସ୍ତାଘାଟ ନଥିବା ଗୋଟିଏ ଛୋଟ ଦ୍ୱୀପକୁ ଚାଲିଯାଆନ୍ତି ବା ପାହାଡ଼ ଉପର ଭଳି କେଉଁ ଜାଗାରେ ରହିଯାଆନ୍ତି ।" ଟିକି ମଣିଷଟି ଜାଣିଥିଲେ ଯେ ମୁଁ ତାଙ୍କ ଜୀବନ ବଞ୍ଚାଇଥିଲି ଏବଂ ତାଙ୍କ ସହିତ ଭୋଜନ କରିବାକୁ ଖୁବ୍ ଜୋରକଲେ । ତେଣୁ ମୁଁ ତାଙ୍କୁ କହିଲି ଯେ ମୁଁ ବୁଧବାର ଦିନ ତାଙ୍କ ସହିତ ରାତ୍ରିଭୋଜନ କରିବାକୁ ଆସିବି । ସେତେବେଳେ ସେ ମୋତେ ସେମିତି କିଛି ଅଲଗା ଲାଗିଲେ ନାହିଁ । କେବଳ ତାଙ୍କ କାନଦୁଇଟି ଟିକିଏ ବଡ଼ ଲାଗିଲା ଓ ପ୍ରତି କାନ ଉପରେ କିଛି ବାଳ ଉଠିଥିଲା – ଠିକ ଚିଡ଼ିଆଖାନାର ବଣୁଆ ବିଲେଇ ଭଳି । ମୁଁ ଭାବୁଛି ମୋର ସେମିତି ହୋଇଥିଲେ ମୁଁ ବାଳତକ କାଟି ପକାଇଥା'ନ୍ତି । ସେ ମୋତେ କହିଲେ ଯେ ତାଙ୍କ ନାଁ ଲିକୀ ଓ ସେ ଦ୍ୱିତୀୟ ମହଲାରେ ରହନ୍ତି ।

ମୁଁ ବୁଧବାର ଦିନ ତାଙ୍କ ସହିତ ରାତ୍ରିଭୋଜନ କରିବାକୁ ଗଲି । ମୁଁ ଉପର ମହଲାକୁ ଉଠିଲି ଓ କବାଟ ଖଡ଼ ଖଡ଼ କଲି । ସେ କବାଟ ଓ ଦୁଆର ମୁହଁ ବେଶ୍ ସାଧାରଣ ଲାଗୁଥିଲା । କିନ୍ତୁ ମୁଁ ଯେତେବେଳେ ଭିତରକୁ ଗଲି, ଘରଟି ବଡ଼ ଅବାଗିଆ ଲାଗିଲା । ଚାରିପାଖର କାନ୍ଥରେ ପରଦାମାନ ଝୁଲୁଥାଏ, ସେଥିରେ ମଣିଷ ଓ ଜୀବଜନ୍ତୁଙ୍କର ଚିତ୍ରର ଛୁଞ୍ଚିକାମ ହୋଇଥାଏ । ଗୋଟିଏ ଚିତ୍ରରେ ଦୁଇଟି ମଣିଷ ଘର ତୋଳୁଥିଲେ । ଆଉ ଗୋଟିଏ ଚିତ୍ରରେ ଥିଲା ଜଣେ ମଣିଷ କୁକୁର ଓ ଧନୁଶର ଧରି ଠେକୁଆ ଶିକାର କରୁଥିବାର ଦୃଶ୍ୟ । ସେଗୁଡ଼ିକ ସୁନ୍ଦର ସୂଚୀକାମ ଥିଲା, ମୁଁ ତାକୁ

ଛୁଇଁକରି ମଧ୍ୟ ଦେଖିଲି । କିନ୍ତୁ ସେଥିରେ ନିଶ୍ଚୟ କିଛି ମଜାକଥା ଲୁଚି ରହିଥିଲା । କାରଣ ସେ ଚିତ୍ରଗୁଡ଼ିକ ବଦଳି ଚାଲିଥିଲେ । ଆମେ ଚାହିଁଥିବା ପର୍ଯ୍ୟନ୍ତ ଚିତ୍ରଗୁଡ଼ିକ ସ୍ଥିର ରହୁଥାଏ । କିନ୍ତୁ ଟିକିଏ ଅନ୍ୟଆଡ଼େ ଚାହିଁବା ଭିତରେ ସେଥିରେ କିଛି ବଦଳି ଯାଉଥାଏ । ଆମେ ଖାଉଥିବା ସମୟ ଭିତରେ ଘର ତୋଳୁଥିବା ମଣିଷମାନେ ଚିତ୍ରରେ ଆଉ ଗୋଟିଏ ମହଲା ଯୋଡ଼ିସାରିଥିଲେ ଏବଂ ଶିକାରୀଟି ଗୋଟିଏ ଚଢ଼େଇ ଆଉ ତା'ର କୁକୁର ଦୁଇଟି ଠେକୁଆ ଶିକାର କରିଥିବାର ଦୃଶ୍ୟ ଦେଖାଯାଇଥିଲା ।

ଆସବାବ ପତ୍ର ମଧ୍ୟ ସେମିତି କୌତୁକିଆ ଥିଲା । ଗୋଟିଏ ବହିଥାକ କାଚଭଳି କିଛି ଜିନିଷରେ ତିଆରି ହୋଇଥିଲା, ଆଉ ତା' ଭିତରେ ଖୁବ୍ ବଡ଼ ବଡ଼ ବହି ଭର୍ତ୍ତି ହୋଇଥିଲା । ସେଥିରୁ କୌଣସି ବହି ଫୁଟେ ଉଚ୍ଚରୁ କମ୍ ନ ଥିଲା । ପ୍ରତ୍ୟେକ ବହି ପୁଣି ଚମଡ଼ା ବନ୍ଧେଇ । ବହିଥାକ ଉପରେ ପୁଣି କେତୋଟି ଥାକ ରହିଥିଲା । କାଠର ଚଉକିରେ ସୁନ୍ଦର କାରୁକାର୍ଯ୍ୟ ହୋଇଥିଲା । ଦୁଇଟି ଟେବୁଲ ବି ସେଠାରେ ଥିଲା । ଗୋଟିଏ ଟେବୁଲ ତମ୍ବାରେ ତିଆରି ହୋଇଥିଲା ଓ ତାହା ଉପରେ ରହିଥିଲା ସ୍ଫଟିକର ଖୁବ୍ ବଡ଼ ଗୋଲକଟିଏ । ଆର ଟେବୁଲଟି ଖଣ୍ଡେ ନିଦାକାଠରେ ଗଢ଼ା ହୋଇଥିଲା । ତାହା ଥିଲା ପ୍ରାୟ ୧୦ ଫୁଟ ଲମ୍ବ, ୪ ଫୁଟ ଓସାର ଓ ତିନି ଫୁଟ ଉଚ୍ଚ । ସେଥିରେ ପୁଣି କଣାସବୁ ଥାଏ, ଯେଉଁଥିରେ ଆଣ୍ଠୁ ପଶିଯିବ । ଛାତରୁ ସେମିତି କେତୋଟି ଅଦ୍ଭୁତ ଜିନିଷ ଝୁଲୁଥାଏ । ପ୍ରଥମେ ମୁଁ ଜାଣିପାରିଲି ନାହିଁ ଘର ଭିତରକୁ ଆଲୁଅ କିପରି ଆସୁଥିଲା । ପରେ ମୁଁ ଦେଖିଲି ଯେ କୁଣ୍ଡରେ ଲାଗିଥିବା ଏକ ପ୍ରକାରର ଗଛରୁ ଆଲୁଅ ଆସୁଛି । ସେଭଳି ଗଛ ମୁଁ ଆଗରୁ କେବେ ଦେଖି ନ ଥିଲି । ସେଥିରେ ବିଲାତି ବାଇଗଣ ଆକାରର ଚକ୍‌ଚକ୍ କରୁଥିବା ନାଲି, ହଳଦିଆ ଓ ନେଳିଆ ଫଳ ସବୁ ଝୁଲୁଥିଲା । ସେଗୁଡ଼ିକ ଛଦ୍ମରୂପୀ ବିଜୁଳି ବତୀ ନ ଥିଲା । ମୁଁ ଗୋଟିକରେ ହାତମାରି ଦେଖିଲି ତାହା ଖୁବ୍ ଶୀତଳ ଓ ଫଳ ପରି ନରମ ଥିଲା ।

ଲିକୀ ପଚାରିଲେ, "ଆଚ୍ଛା, ଆପଣ କ'ଣ ଖାଇବାକୁ ଭଲପାଆନ୍ତି ?"

ମୁଁ କହିଲି, "ଯାହା ଆପଣଙ୍କର ଅଛି ।"

ସେ କହିଲେ, "ଆପଣ ଯାହା ଚାହିଁବେ, ପାଇପାରିବେ । ଗୋଟିଏ ସୁପ (ଝୋଳ) ଆଗ ବାଛନ୍ତୁ ।"

ମୁଁ ଭାବିଲି ଯେ ସେ ହୁଏତ କେଉଁ ହୋଟେଲରୁ ଖାଦ୍ୟ ମଗାଇବା ବ୍ୟବସ୍ଥା କରିଛନ୍ତି । ତେଣୁ ମୁଁ ଲାଲ ରଙ୍ଗର କ୍ରିମ୍‌ଦିଆ ଋଷୀୟ ସୁପ୍ *ବୋର୍ଶ୍* ବରାଦକଲି ।

"ଠିକ୍ ଅଛି", ସେ କହିଲେ, "ମୁଁ ଆଣୁଛି । ତେବେ ମୋର ନିତିଦିନିଆ ବାଢ଼ିବା

ବ୍ୟବସ୍ଥାରେ ଆପଣ କିଛି ଖରାପ ଭାବିବେ ନାହିଁ ତ ? ଆପଣ ସହଜରେ ଡରି ଯାଆନ୍ତି ନାହିଁ ତ?"

"ନାଁ, ସହଜରେ ନୁହେଁ ।" ମୁଁ କହିଲି ।

"ଆଚ୍ଛା, ତେବେ ମୁଁ ମୋର ସେବକକୁ ଡାକୁଛି । ମାତ୍ର, ମୁଁ ଆଗରୁ କହିରଖୁଛି ଯେ ସେ ଏକ ବିଚିତ୍ର ଲୋକ ।"

ଏତିକି କହି ଶ୍ରୀ ଲିକୀ ତାଙ୍କର ମୁଣ୍ଡକୁ ଏପରି ହଲାଇଲେ ଯେ ତାଙ୍କ କାନଦୁଇଟି ମୁଣ୍ଡରେ ପିଟିହୋଇ ହାତରେ ତାଳିମାରିବା ପରି ଶବ୍ଦ ହେଲା । ଅବଶ୍ୟ ହାତ ତାଳି ଭଳି ଏତେ ଜୋର୍ ଶବ୍ଦ ନୁହେଁ । ଘରର କୋଣରେ ଥିବା ଲୁଗାଧୁଆ ହାଣ୍ଡି ଭଳି ଗୋଟିଏ ବଡ଼ ତମ୍ବା ପାତ୍ରରୁ କ'ଣ ଗୋଟିଏ ବାହାରିଲା, ଯାହାକୁ ମୁଁ ଗୋଟିଏ ଓଦା ସାପ ବୋଲି ଭାବିଲି । ତା'ପରେ ସେଥିରେ ଥିବା ଶୋଷକଗୁଡ଼ିକୁ ଦେଖି ଜାଣିଲି ଯେ ତାହା ଅକ୍ଟୋପସ୍‌ର ଗୋଟିଏ ଗୋଡ଼ । ତା'ର ଗୋଡ଼ଟି ଗୋଟିଏ ଥାକ ଖୋଲି ବଡ଼ ତଉଲିଆଟିଏ ବାହାର କଲା ଓ ହାଣ୍ଡିରୁ ଆଉ ଗୋଟିଏ ଗୋଡ଼ କାଢ଼ି ପୋଛିହେଲା । ଅକ୍ଟୋପସ୍‌ଟି ତା'ର ଶୁଖିଲା ଗୋଡ଼ରେ କାଛକୁ ଶୋଷିଧରିଲା ଓ ପୂରା ଦେହକୁ ଭିଡ଼ିକରି ଧୀରେ ଧୀରେ ବାହାରି ପଡ଼ିଲା । ନିଜକୁ ଭଲକରି ଶୁଖାଇଲା ପରେ ସେ କାଛ ଉପରେ ଚାଲିଲା । ଆଗରୁ ମୁଁ ଏତେ ବଡ଼ ଅକ୍ଟୋପସ୍ କେବେ ଦେଖି ନ ଥିଲି ।



ତାହାର ଗୋଟିଏ ଗୋଟିଏ ବାହୁ ପ୍ରାୟ ଆଠ ଫୁଟ ଲମ୍ବ ଏବଂ ଦେହଟି ଗୋଟିଏ ବଡ଼ ଅଖା ପରି ହୋଇଥିଲା । ମାଛିଟିଏ ପରି ତା'ର ଶୋଷକକୁ ଲଖାଇ ଲଖାଇ କାନ୍ଥରେ ଚଢ଼ି ସେ ଛାତକୁ ଉଠିଲା । ଟେବୁଲର ଠିକ ଉପରେ ପହଞ୍ଚିଲା ପରେ ସେ କେବଳ ଗୋଟିଏ ବାହୁରେ ଝୁଲିରହିଲା ଓ ଅନ୍ୟ ସାତଟି ବାହୁରେ ପ୍ଲେଟ, ଛୁରୀ, ଓ କଣ୍ଟାଚାମୁଚ ଆଦି ଉପର ଥାକରୁ ଆଣି ଟେବୁଲ ଉପରେ ସଜାଇ ରଖିଲା ।

"ଇଏ ହେଲା ମୋର ସେବକ ଅଲିଭର", ଲିକୀ କହିଲେ । ସେ ମଣିଷ ସେବକମାନଙ୍କ ଠାରୁ ଢେର ଭଲ । କାରଣ କାମ କରିବାକୁ ତା'ର ବେଶୀ ହାତ ଅଛି । ଗୋଟିଏ ପ୍ଲେଟକୁ ସେ ଦଶଟି ଶୋଷକ ଲଗାଇ ଧରିରଖେ, ତେଣୁ ଗୋଟିଏ ବି ପ୍ଲେଟ ପଡ଼େନାହିଁ । ଅକ୍‌ଟୋପସ୍ ଅଲିଭର ଟେବୁଲ ସଜାଇ ଦେଲା ପରେ ଆମେ ଯାଇ ବସିଲୁ । ସେ ଏକା ଥରକେ ତା'ର ସାତଟି ଖାଲି ହାତରେ ବିଭିନ୍ନ ବୋତଲରେ ପାଣି, ଲେମ୍ବୁ ସରବତ, ବିଅର ଓ ଚାରିପ୍ରକାରର ମଦ୍ୟ ଆଣି ମୋତେ ଯାଚିଲେ । ମୁଁ କିଛି ପାଣି ଓ ଖୁବ୍ ଭଲ ଲାଲ ମଦ୍ୟରୁ କିଛି ନେଲି ।

ଏସବୁ ଏତେ ଅଦ୍ଭୁତ ଥିଲା ଯେ ଶ୍ରୀ ଲିକୀ ଗୋଟିଏ ଡେଙ୍ଗା ଟୋପି ପିନ୍ଧିଥିବା କଥା ମୋତେ ଆଶ୍ଚର୍ଯ୍ୟ ଲାଗିନଥିଲା । କିନ୍ତୁ ମୋତେ ଟିକିଏ ଆଚମ୍ବିତ ଲାଗିଲା ଯେତେବେଳେ ସେ ଟୋପିକୁ କାଢ଼ି ସେଥିରୁ ଦୁଇ ପ୍ଲେଟ ସୁପ୍ ଢାଳିଲେ ।



ସେ କହିଲେ, "ଆରେ ଆମେ କିଛି ଲହୁଣୀ ଚାହୁଁଛୁ । ଫିଲିସ୍ ଏଠାକୁ ଆସ ତ !" ଏକଥା ଶୁଣି ଠେକୁଆ ଆକାରର ଗୋଟିଏ ଛୋଟ ସବୁଜ ଗାଈ ତା'ର ଜନ୍ତାରୁ ବାହାରି ଟେବୁଲ ଉପରକୁ ଡ଼େଇଁ ପଡ଼ିଲା ଓ ଶ୍ରୀ ଲିକୀଙ୍କ ଆଗରେ ଠିଆ ହୋଇଗଲା । ଲିକୀ ତାକୁ ଦୁହିଁ ଅଲିଭର ବଢ଼ାଇଦେଇଥିବା ଗୋଟିଏ ପାତ୍ରରେ ଲହୁଣୀ କାଢ଼ିଲେ । ସେ ଲହୁଣୀ ଚମତ୍କାର ଥିଲା ଓ ମୁଁ ସୁପ୍‌ରେ ମିଶାଇ ଖୁସିରେ ପିଇଲି ।

ଶ୍ରୀ ଲିକୀ ପଚାରିଲେ, "ଏବେ ଆଉ କ'ଣ ଖାଇବେ ?

ମୁଁ ଉତ୍ତର ଦେଲି, "ଆପଣ ଯାହା ବି ଦେବେ ।"

ସେ କହିଲେ "ଠିକ ଅଛି । ଆମେ ଏଥର ସେକା ଟର୍ବଟ ମାଛ ଓ ଟର୍କି (ବଡ଼ କୁକୁଡ଼ା ଭଳି ପକ୍ଷୀ) ଖାଇବା । ଅଲିଭର, ଶୀଘ୍ର ଗୋଟିଏ ଟର୍ବଟ ମାଛ ଧରିଆଣ ଓ ପମ୍ପେ, ତୁମେ ଏହାକୁ ସେକିବାକୁ ପ୍ରସ୍ତୁତ ହୁଅ ।" ଏହା ଶୁଣି ଅଲିଭର ଗୋଟିଏ ବନିଶୀ କଣ୍ଟା ଆଣି ତାକୁ ଶୂନ୍ୟରେ ବୁଲାଇଲା । ଏହା ଭିତରେ ଚୁଲି ପାଖରେ ଏକ ଶବ୍ଦ ହେଲା ଓ ସେଥିରୁ ପମ୍ପେ ବାହାରିଲା । ପମ୍ପେ ଥିଲା ଗୋଟିଏ ଛୋଟ ଡ୍ରାଗନ । ତା'ର ଦେହର ଲମ୍ବ ଥିଲା ପ୍ରାୟ ଏକ ଫୁଟ ଓ ଲାଞ୍ଜଟି ଆଉ ଏକ ଫୁଟ ଲମ୍ବି ଥିଲା । ସେ ଏପର୍ଯ୍ୟନ୍ତ



ଉଡ଼ ନିଆଁରେ ଶୋଇଥିଲା ଓ ତାତିକରି ଲାଲ ଟକଟକ ଦିଶୁଥିଲା । ଚୁଲିରୁ ବାହାରିବା ମାତ୍ରେ ସେ ତା'ର ପଛ ଗୋଡ଼ରେ ହଳେ ଆଜ୍‌ବେସ୍‌ଟସ୍ ଯୋତା ପିନ୍ଧିଲା ।

"ପମ୍ପେ, ଏବେ ତୁମର ଲାଞ୍ଜ ଠିକ ଭାବରେ ରଖ", ଶ୍ରୀ ଲିକୀ କହିଲେ । "ଯଦି ତୁମେ ପୁଣି ଗାଲିଚା ପୋଡ଼ିବ ତା'ହେଲେ ମୁଁ ତୁମ ଉପରେ ବାଲ୍‌ଟିଏ ଥଣ୍ଡା ପାଣି ଢାଳିଦେବି ।" କେବଳ ମୁଁ ଶୁଣିବା ପରି ଚାପା ସ୍ୱରରେ ସେ କହିଲେ, "ଅବଶ୍ୟ ମୁଁ ସତରେ ଏହା କରିବି ନାହିଁ । କାରଣ ପତଳା ଚମର ଛୋଟ ଡ୍ରାଗନ ଉପରେ ଥଣ୍ଡା ପାଣି ଢାଳିବା ଏକ ଅତି ନିଷ୍ଠୁର କାମ ହେବ ।" କିନ୍ତୁ ବିଚରା ପମ୍ପେ ସେହି ଧମକରେ ଖୁବ ଡରିଗଲା । ସେ ଟିକିଏ କୁଁ କୁଁ ହେଲା ଓ ତା'ର ନାକରୁ ବାହାରୁଥିବା ହଳଦିଆ ଶିଖା ଫିକା ନୀଳ ଦେଖାଗଲା । ନିଜ ଲାଞ୍ଜ ଓ ଦେହର ଆଗପଟକୁ ଟେକିଧରି ସେ ତା'ର ପଛ ଗୋଡ଼ରେ ଅଖାଡୁଆ ଭାବରେ ହଲି ହଲି ଚାଲୁଥିଲା । ଗାଲିଚାକୁ ରକ୍ଷାକରିବା ସହିତ ତା'ର ପାଦକୁ ଉଷୁମ ରଖୁଥିଲେ ବି ସେହି ଆଜବେଷ୍ଟସ୍ ଯୋତା ଯୋଗୁ ବୋଧେ ତା'କୁ ଚାଲିବାରେ ଅସୁବିଧା ହେଉଥିଲା । ଆବଶ୍ୟ, ଡ୍ରାଗନମାନେ ସାଧାରଣତଃ ଚାରିଗୋଡ଼ରେ ଚାଲନ୍ତି ଓ ଯୋତା ପିନ୍ଧନ୍ତିନାହିଁ । ତଥାପି ପମ୍ପେ ଯେ ଏତେ ଭଲ ଚାଲିପାରୁଥିଲା ତାହା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି ।

ପମ୍ପେକୁ ଦେଖିବାରେ ମୁଁ ଏତେ ମଜ୍ଜି ଯାଇଥିଲି ଯେ ଅଲିଭର କିପରି ଟର୍ବଟ ମାଛକୁ ଧରିଲା, ମୁଁ ଦେଖିପାରିଲି ନାହିଁ । ମୁଁ ପୁଣି ତାଆଡ଼େ ଚାହିଁଲା ବେଳକୁ ସେ ମାଛକୁ ସଫାକରି ପମ୍ପେ ପାଖକୁ ଫୋପାଡ଼ିଲା । ପମ୍ପେ ତା'ର ଆଗ ଥାବାରେ ମାଛଟି ଧରିଲା । ଏବେ ସେ ଥାବା ଟିକିଏ ଥଣ୍ଡା ହୋଇ ମାଛ ସେକିବା ପାଇଁ ଠିକ ତାପମାତ୍ରାକୁ ଆସିଯାଇଥିଲା । ତା'ର ଲମ୍ବା ଲମ୍ବା ଆଙ୍ଗୁଳିର ଅଗରେ ଥିବା ନଖ ସାହାଯ୍ୟରେ ମାଛକୁ ଏହାତ ସେହାତ କରି ଧରୁଥିଲା । ହାତ ବଦଳାଇବାପରେ ସେ ଖାଲି ହାତଟିକୁ ନିଜର ଗରମ ଛାତି ଉପରେ ରଖି ଉଷୁମ କରିନେଉଥିଲା । ମାଛ ସେକିସାରି ଅଲିଭର ଧରିଥିବା ପ୍ଲେଟରେ ରଖିବା ବେଳକୁ ପମ୍ପେକୁ ଖୁବ୍ ଥଣ୍ଡା ଲାଗୁଥିଲା ଓ ତା'ର ଦାନ୍ତ ଠକଠକ କରୁଥିଲା । ତେଣୁ କାମ ସାରଯିବାରୁ ସେ ଅତି ଖୁସୀରେ ଚୁଲି ଭିତରକୁ ଡେଇଁ ପଡ଼ିଲା ।

ଶ୍ରୀ ଲିକୀ କହିଲେ, "ହଁ, ମୁଁ ଜାଣିଛି ଯେ କେତେ ଲୋକଙ୍କ ମତରେ ତରୁଣ ଡ୍ରାଗନମାନଙ୍କୁ ଏହିପରି ଥଣ୍ଡା କରିଦେବା ଏକ ନିଷ୍ଠୁର କାମ । କିନ୍ତୁ ମୁଁ ଭାବେ ପ୍ରତି ଡ୍ରାଗନ ଏହା ଜାଣିବା ଉଚିତ ଯେ ଜୀବନଟା କେବଳ ନିଆଁ ତାତିର ଖେଳ ନୁହେଁ । ବରଂ ପୃଥିବୀ ହେଉଛି ତାଙ୍କ ପସନ୍ଦଠାରୁ ବେଶୀ ଥଣ୍ଡାର ଜାଗା । ଆହୁରି ମଧ୍ୟ ସେମାନଙ୍କୁ ଯଦି ବେଶ୍ ପରିମାଣର ଗନ୍ଧକ ଖାଇବାକୁ ଦିଆଯାଏ, ତେବେ ତାଙ୍କୁ ଥଣ୍ଡାଶର୍ଦ୍ଦି ଧରିବନାହିଁ । ଅବଶ୍ୟ ଶର୍ଦ୍ଦି ଧରିଥିବା ଡ୍ରାଗନ ନିଜ ପାଇଁ ତଥା ଅନ୍ୟମାନଙ୍କ ପାଇଁ

ଅନେକ ଅସୁବିଧା ସୃଷ୍ଟି କରିଥାଏ । ମୁଁ ଜାଣିବାରେ ଗୋଟିଏ ବୟସ୍କ ଡ୍ରାଗନ ଛିଙ୍କିବାବେଳେ ପ୍ରାୟ ୧୦୦ ଗଜ ପର୍ଯ୍ୟନ୍ତ ଅଗ୍ନିଶିଖା ଫିଙ୍ଗିଥାଏ । ଜଣେ ଚୀନ ସମ୍ରାଟଙ୍କ ପ୍ରାସାଦକୁ ଏହିଭଳି ଗୋଟିଏ ଡ୍ରାଗନ ଥରେ ଜଳାଇ ଦେଇଥିଲା । ଏହାଛଡ଼ା, ଡ୍ରାଗନକୁ ଯଦି ମୁଁ କାମରେ ଲଗାଇପାରିବି ନାହିଁ, ତେବେ ତାକୁ ରଖିବାର ସାମର୍ଥ୍ୟ ପ୍ରକୃତରେ ମୋର ନାହିଁ । ତା'ର ନିଶ୍ୱାସରେ କବାଟର ପୁରୁଣା ରଙ୍ଗକୁ ଜଳାଇ ଛଡ଼ାଇବାପାଇଁ ମୁଁ ଏବେ ତାକୁ କାମରେ ଲଗାଇଥିଲି । ତା'ର ଲାଞ୍ଜ ସାହାଯ୍ୟରେ ବଢ଼ିଆ ଝଳେଇ କରିହୁଏ । ଚୋର ଜଗିବାରେ କୁକୁରଠାରୁ ମଧ୍ୟ ଏହା ଅଧିକ ନିର୍ଭରଶୀଳ । ବନ୍ଧୁକର ଗୁଳି ଗୋଟିଏ କୁକୁରକୁ ମାରି ଦେଇ ପାରେ । କିନ୍ତୁ ସେହି ସୀସାତିଆରି ଗୁଳି ପମ୍ପେକୁ ଛୁଇଁବା ମାତ୍ରେ ତରଳିଯାଏ । ଯାହାହେଲେ ବି ଡ୍ରାଗନମାନଙ୍କୁ କେବଳ କାମ ପାଇଁ ରଖିବା କଥା, ଘର ସଜାଇବା ପାଇଁ ନୁହେଁ ।

ଏହା ଶୁଣି ମୁଁ ଉତ୍ତରରେ କହିଲି, "ଆଚ୍ଛା, କିନ୍ତୁ ମୋତେ କହିବାକୁ ଲାଜ ଲାଗୁଛି ଯେ ମୋ ଦେଖିବାରେ ପମ୍ପେ ହେଉଛି ପ୍ରଥମ ଜୀବନ୍ତ ଡ୍ରାଗନ ।"

ଶ୍ରୀ ଲିକୀ କହିଲେ, "ଆରେ ମୁଁ କେଡ଼େ ବୋକା । ବିଶେଷଜ୍ଞ ବନ୍ଧୁମାନଙ୍କ ମୋର ଛଡ଼ା ବହୁତ କମ୍ ଅତିଥି ଏଠାକୁ ଆସନ୍ତି । ଆଉ ମୁଁ ପୂରା ଭୁଲିଯାଇଛି ଯେ ଆପଣ ଜଣେ ସାଧାରଣ ଲୋକ । ଟୋପିଟିରୁ କିଛି ସସ୍ ସେ ମାଛ ଉପରେ ଢାଳିଦେଇ କହିଲେ, "ଆପଣ ଏହି ରାତ୍ରୀଭୋଜନ ଭୋଜନଟି ବିଷୟରେ କିଛି ଅଦ୍ଭୁତ କଥା ଲକ୍ଷ କରିଛନ୍ତି କି? ଅବଶ୍ୟ କିଛି ଲୋକ ବହୁକଥା ନିରେଖି ଦେଖନ୍ତି ।"

"ମୁଁ ତ ଏଭଳି କିଛି ବି ଆଗରୁ କେବେ ଦେଖିନଥିଲି", ମୁଁ କହିଲି ।

ଏହି ସମୟରେ ଏକ ସାତରଙ୍ଗୀ ଭଁଅଁର ପୋକ ଟେବୁଲ ଉପରେ ମୋ ଆଡ଼କୁ ଗୁରୁଣ୍ଡି ଗୁରୁଣ୍ଡି ଆସୁଥିଲା । ତା' ପିଠିରେ ଲୁଣ ଡବାଟିଏ ବନ୍ଧାହୋଇଥିଲା ।



ଶ୍ରୀ ଲିକୀ କହିଲେ, "ଆଚ୍ଛା, ଆପଣ ଏବେ ଜାଣିଯିବେଣି ଯେ ମୁଁ ଜଣେ ଯାଦୁକର । ପମ୍ପେ ହେଉଛି ଗୋଟିଏ ପ୍ରକୃତ ଡ୍ରାଗନ । ଏଠାରେ ଅନ୍ୟ ସବୁ ଯେତେ ଜୀବ ଦେଖୁଛନ୍ତି, ସେମାନେ ସବୁ ଆଗରୁ ମଣିଷ ଥିଲେ । ମୁଁ ସେମାନଙ୍କ ରୂପ ବଦଳାଇ ଏମିତି କରିଦେଇଛି । ଏହି ଅଲିଭର କଥା ଦେଖନ୍ତୁ । ସେ ମଣିଷ ଥିବା ସମୟରେ ଟ୍ରେନ୍ ତଳେ ତା'ର ଗୋଡ଼ ଦୁଇଟି କଟିଗଲା । ସେ କଟା ଗୋଡ଼କୁ ମୁଁ ଯୋଡ଼ିପାରିଲି ନାହିଁ, କାରଣ ଯନ୍ତ୍ର ବିପକ୍ଷରେ ମୋର ଯାଦୁ କାମ କରେନାହିଁ । ବିଚରା ଅଲିଭର ଦେହରୁ ରକ୍ତ ଛୁଟିବାରେ ଲାଗିଲା । ମୁଁ ଦେଖିଲି ତାକୁ ବଞ୍ଚାଇବାକୁ ହେଲେ ତାକୁ ଗୋଡ଼ ନଥିବା ଜୀବଟିଏ କରିବାକୁ ପଡ଼ିବ । ତେଣୁ ମୁଁ ତାକୁ ଏକ ଗେଣ୍ଡା କରିଦେଲି ଓ ପକେଟରେ ପୂରାଇ ଘରକୁ ନେଇଗଲି । ତାକୁ ଯେତେବେଳେ ମୁଁ କୁକୁର ବା ଅନ୍ୟ କିଛି ବେଶୀ କାମିକା ଜନ୍ତୁଟିଏ କରିବାକୁ ଚେଷ୍ଟାକଲି, ତା'ର ପଛଗୋଡ଼ ରହୁନଥିଲା । କିନ୍ତୁ ଅକ୍ଟୋପସର ପ୍ରକୃତରେ ଗୋଡ଼ ନଥାଏ । ତା'ର ଆଠଟି ଶୁଣ୍ଢ ମୁଣ୍ଡରୁ ହିଁ ବାହାରିଥାଏ । ତେଣୁ ମୁଁ ଯେତେବେଳେ ତାକୁ ଗୋଟିଏ ଅକ୍ଟୋପସ କରିଦେଲି ସେ ଠିକ ରହିଲା । ମଣିଷ ଥିଲାବେଳେ ସେ ଭଲ ହୋଟେଲରେ ବଢ଼ାବଢ଼ି କାମ କରୁଥିଲା । ତେଣୁ ସେ ଖାଇବା ବୁଝାବୁଝି କାମଟି ଶୀଘ୍ର ଶିଖିନେଲା । ମୁଁ ଭାବୁଛି, ସେ ଜଣେ ପରିଚାରିକା ତୁଳନାରେ ବେଶ୍ ଭଲ, କାରଣ ସେ ପ୍ଲେଟଗୁଡ଼ିକୁ ଉପରୁ ହିଁ ଉଠାଇଥାଏ ଏବଂ କାହାର ପଛରେ ଠିଆ ହୋଇ ବିରକ୍ତିକର ନିଶ୍ୱାସ ଛାଡ଼େନାହିଁ । ଅଲିଭର, ତୁମେ ଏବେ ବଳକା ମାଛଭଜା ଓ ଗୋଟିଏ ବିଅର୍ ବୋତଲ ନେଇପାର । ମୁଁ ଜାଣିଛି ତୁମେ ଏହାକୁ ଖୁବ୍ ଭଲ ପାଅ ।"

ଅଲିଭର ତା'ର ଗୋଟିଏ ହାତରେ ମାଛତକ ଧରିଲା । ଆଉ ଆଠଟି ବାହୁର ମଝିରେ ଥିବା ଶୁଆଥଣ୍ଟ ପରି ଗୋଟିଏ ବିରାଟ ପାଟିରେ ଭରିଦେଲା । ତା'ପରେ ସେ ଥାକରୁ ବିଅର୍ ବୋତଲଟିଏ ବାହାର କରି ତା'ର ଥଣ୍ଟରେ ଖୋଲିଲା ଏବଂ ଆଉ ଦୁଇଟି ଗୋଡ଼ ଛାତରେ ଲଗାଇ ନିଜ ଦେହକୁ ଓଲଟାଇଦେଲା । ଏବେ ତା'ର ପାଟି ଉପରକୁ ହୋଇଯିବାରୁ ସେ ଆରାମରେ ବିଅର୍ ପିଇବାକୁ ଲାଗିଲା । ବୋତଲଟିକୁ ଖାଲିକରିବା ବେଳେ ସେ ତା'ର ବଡ଼ ବଡ଼ ଆଖିରୁ ଗୋଟିଏକୁ ମିଟିମିଟି କରିଚାଲିଥିଲା । ମୁଁ ସେତେବେଳେ ନିଶ୍ଚିତ ହୋଇଗଲି ଯେ ଆଗରୁ ସେ ଏକ ମଣିଷ ଥିଲା । କାରଣ ସାଧାରଣ ଅକ୍ଟୋପସ୍ ଏମିତି ଆଖିମିଟିକା ମାରିପାରନ୍ତି ନାହିଁ ।

ଏହାପରେ ଆମର ତର୍କ ବେଶ୍ ସାଧାରଣ ଭାବରେ ଆସିଲା । ଅଲିଭର ଗୋଟିଏ ବଡ଼ ତଡଲା ଥାଳି ଆଣିଲା ଓ ତା'ଉପରେ ଗୋଟିଏ ଘୋଡ଼ଣୀ ଢାଙ୍କିଦେଲା । ମୁଁ ଦେଖିବାରେ ସେହି ଘୋଡ଼ଣୀ ଭିତରେ କିଛି ନଥିଲା । ଶ୍ରୀ ଲିକୀ ଉଠିପଡ଼ି ଛତାଥାକରୁ

ଗୋଟିଏ ବଡ଼ ଯାଦୁବାଡ଼ି ଆଣିଲେ ଓ ସେଇ ଥାଳିଆ ଆଡ଼େ ଦେଖାଇ ଗୁଣୁଗୁଣୁ କରି କିଛି କହିଲେ । ତା'ପରେ ଅଲିଭର ଯେତେବେଳେ ଘୋଡ଼ଣୀଟି ଉଠାଇଦେଲା, ସେ ଥାଳିରେ ଗୋଟିଏ ଖୁବ୍ ଗରମ ରନ୍ଧା ଟର୍କି ଥୁଆହୋଇଥିଲା ।

ଶ୍ରୀ ଲିଙ୍କୀ କହିଲେ, "ଏହା ଭାରି ସହଜ । ଜଣେ ସାଧାରଣ ଯାଦୁକର ମଧ୍ୟ ମନ୍ତ୍ର ଫୁଙ୍କି ଏମିତି କରିଦେବ । କିନ୍ତୁ ସେ ଖାଦ୍ୟ ଏତେ ତଟକା କି ନୁହେଁ ତାହା କହିହେବନାହିଁ । ତେଣୁ ମୁଁ ଦେଖେ ମାଛ ଯେପରି ମୋ ଆଗରେ ଧରାଯିବ । ମାତ୍ର ଚଢ଼େଇଗୁଡ଼ିଙ୍କ କେତେ ଦିନ ରହିଗଲେ ଭଲ । ହଁ, କିଛି ସସେଜ୍ (ଧୂଆଁଦିଆ ମାଂସ) ବି ଖାଇବା । ତେବେ ତାହା ସହଜରେ ମିଳିଯିବ ।"

ସେ ତାଙ୍କ ପକେଟରୁ ଗୋଟିଏ ଛୋଟ ମାଟି ନଳୀ ବାହାର କରି ଫୁଙ୍କିଦେଲେ । ସସେଜ୍ ଆକୃତିର ଗୋଟିଏ ବଡ଼ ଧୂସର ଫୋଟକା ଆରପଟେ ବାହାରି ପଡ଼ିଲା । ଅଲିଭର ତା'ର ଗୋଟିଏ ଶୁଣ୍ଢରେ ଏହାକୁ ଟେକିନେଲା ଓ ଗରମ ପ୍ଲେଟ୍‌ରେ ରଖିଦେଲା । ମୁଁ ଖାଇ ଦେଖିଲି ଏହା ସତରେ ଏକ ସସେଜ୍! ଲିଙ୍କୀ ଏମିତି ଛଅଟି ସସେଜ୍ ତିଆରି କଲେ । ମୁଁ ଏହା ଦେଖୁଥିଲାବେଳେ ଅଲିଭର ସିଝା ପରିବା ଆଣି ରଖିଦେଇଥିଲା । ସେ ତାକୁ କେଉଁଠୁ ଆଣିଲା ମୁଁ ଜାଣିପାରିଲି ନାହିଁ । ଆଗଭଳି ଶ୍ରୀ ଲିଙ୍କୀଙ୍କ ଟୋପିରୁ ସସ୍ ଓ ଝୋଳ ଆଦି ବାହାରିଲା ।



ଏହା ପରେ ପରେ ସେହି ସନ୍ଧ୍ୟାର ଏକମାତ୍ର ଦୁର୍ଘଟଣାଟି ଘଟିଲା । ଯେଉଁ ପୋକଟି ଲୁଣଡବା ନେଉଥିଲା, ସେ ଟେବୁଲ କନାରେ ଛନ୍ଦିହୋଇ ଗଡ଼ିପଡ଼ିଲା । ଫଳରେ ଲୁଣତକ ଲିକୀଙ୍କ ଆଗରେ ଅଜାଡ଼ି ହୋଇଗଲା ଓ ସେ ତା' ଉପରେ ଖୁବ୍ ରାଗିକରି ତାଗିଦ କଲେ ।

"ଲିଓପୋଲ୍ଡ, ଏହା ଭାଗ୍ୟର କଥା ଯେ ମୁଁ ଜଣେ ବିଚାରବନ୍ତ ଲୋକ । ମୁଁ ଯଦି ଅନ୍ଧବିଶ୍ୱାସୀ ହୋଇଥା'ନ୍ତି ତେବେ ଏହାକୁ ଦୁର୍ଭାଗ୍ୟ ମନେ କରିଥା'ନ୍ତି । କିନ୍ତୁ ମୁଁ ଯାହା କରିବି ତାହା କେବଳ ତୁମପାଇଁ ହିଁ ଦୁର୍ଭାଗ୍ୟର କଥା ହେବ । ମୁଁ ତୁମକୁ ଏକ ମଣିଷ କରିଦେଇ ପାରିବି । ଯଦି ମୁଁ ଏହା କରେ ତେବେ ତୁମକୁ ସିଧା ସେ ଗାଲିଚା ଉପରେ ବସାଇ ପାଖ ଥାନାକୁ ପଠାଇ ଦିଅନ୍ତି । ତୁମେ କେଉଁଠାରେ ଲୁଚିଥିଲ ବୋଲି ପୋଲିସ ସେଠାରେ ତୁମକୁ ନିଷ୍ଚୟ ପଚାରିବେ । ତୁମେ କ'ଣ ଭାବୁଛ ସେମାନେ ବିଶ୍ୱାସ କରିବେ ଯେ ଗତ ଏକ ବର୍ଷ ଧରି ତୁମେ ଗୋଟିଏ ପୋକ ହୋଇ ରହିଥିଲ ? ତୁମେ ଏ ଅଘଟଣ ପାଇଁ ଦୁଃଖିତ କି?"

ଲିଓପୋଲ୍ଡ ବହୁତ ଚେଷ୍ଟା କରି ଲୁଣଜାଗା ବନ୍ଧା ଦଉଡ଼ିକୁ ପିଠିରୁ ଖସାଇଲା ଓ ତା'ର ପିଠିରେ ଓଲଟି ପଡ଼ି ଗୋଡ଼ଗୁଡ଼ିକ ଉପରେ ଧୀରେ ଧୀରେ ହଲାଇଲା । ଭୁଲ କାମ କରିଥିବା କୁକୁରଟିଏ ଯେପରି ଲାଜରେ କରିଥାଏ ।

ଶ୍ରୀ ଲିକୀ କହିଲେ, ଲିଓପୋଲ୍ଡ ଯେତେବେଳେ ମଣିଷ ଥିଲା, ଲୋକମାନଙ୍କୁ ଠକି ପଇସା ରୋଜଗାର କରୁଥିଲା । ପୋଲିସ ଯେତେବେଳେ ତାକୁ ଗିରଫ କରିବାକୁ ଖୋଜିଲେ, ସେ ସାହାଯ୍ୟ ପାଇଁ ମୋ ପାଖକୁ ଆସିଥିଲା । ମୁଁ ଜାଣିଥିଲି ଯେ ଧରାପଡ଼ିଲେ ଆଇନ ଅନୁସାରେ ସେ ସାତବର୍ଷ ସଶ୍ରମ କାରାଦଣ୍ଡ ଭୋଗିବ । ଆଉ ସେ ଦଣ୍ଡ ପାଇବା ଉଚିତ ବୋଲି ମୁଁ ଭାବୁଥିଲି । ତେଣୁ ତା'ର ଦଣ୍ଡ ଭାବରେ ସେ ପାଞ୍ଚବର୍ଷ ପାଇଁ ପୋକଟିଏ ହୋଇ ମୋର ସେବାଯତ୍ନ କରିବାକୁ ରାଜିହେଲା । ସେ ଯଦି ଠିକ ଭାବରେ ତା କାମ କରିବ, ତେବେ ପାଞ୍ଚ ବର୍ଷ ପରେ ମୁଁ ତାକୁ ଅଲଗା ଚେହେରାର ମଣିଷଟିଏ କରିଦେବି । ତେଣୁ ପୋଲିସ ତାକୁ ଚିହ୍ନିପାରିବ ନାହିଁ । ସେଥିପାଇଁ ଏବେ ଲିଓପୋଲ୍ଡ ପୋକ ରୂପରେ ଚଳୁଛି । ଆଛା, ମୁଁ ଦେଖୁଛି ଯେ ଲୁଣତକ ଢାଳିଦେଇଥିବାରୁ ସେ ଏବେ ଅନୁତାପ କରୁଛି । ଆଛା ଲିଓପୋଲ୍ଡ, ତୁମେ ଏବେ ସବୁତକ ଲୁଣ ଗୋଟାଇଦିଅ ।"

ସେ ତା'ପରେ ଲିଓପୋଲ୍ଡକୁ ଟେକି ସିଧା କରିଦେଲେ । ମୁଁ ଦେଖିଲି, ସେ ବୁଣି ଦେଇଥିବା ଲୁଣତକ ଗୋଟାଇବାରେ ଲାଗିଗଲା । ତାକୁ ପ୍ରାୟ ଘଣ୍ଟାଏରୁ ଅଧିକ ସମୟ ଲାଗିଲା । ସେ ପ୍ରଥମେ ଲୁଣ ଦାନାଟିଏ ପାଟିରେ ଧରେ ଓ ଆଗ ଦୁଇଗୋଡ଼ରେ ତା'ର ଦେହକୁ ଉଠାଇ ଲୁଣଡବାରେ ପକାଇଦିଏ । ତା'ପରେ ସେ ଏକ ସୁବିଧା ଉପାୟ କଲା ।

ତା'ର ଶୁଣ୍ଢଗୁଡ଼ିକ ଛୋଟ ଓ ପଞ୍ଝା ପରି ହୋଇଥାଏ । ତାକୁ ଲଗାଇ ସେ ବେଶ୍ ସହଜରେ ଲୁଣକୁ ଓଳାଇ ଗଦା କରିଚାଲିଲା । କିଛି ସମୟ ପରେ ଶୁଣ୍ଢରେ ଲୁଣ ଲାଗି କୁଣ୍ଡାଇହେବାରୁ ତାକୁ ବୋଧହୁଏ ଅସୁବିଧା ଲାଗିଲା । ତେଣୁ ସେ ଗୋଡ଼ରେ ଶୁଣ୍ଢକୁ ଝାଡ଼ିପକାଇଲା । ଶେଷରେ ସେ ଆଗଗୋଡ଼ରେ ଖଣ୍ଡେ କାଗଜ ଧରି ସେଥିରେ ଲୁଣତକ ଟୋକିଦେଲା ।

ଶ୍ରୀ ଲିକୀ କହିଲେ, "ଗୋଟିଏ ପୋକ ପାଇଁ ଏହା ବହୁତ ବୁଦ୍ଧିମାନ କାମ । ମୁଁ ଯେତେବେଳେ ତାକୁ ପୁଣି ମଣିଷ କରିଦେବି, ସେ ନିଜ ହାତରେ ଭଲ କାମ କରି ସଚ୍ଚୋଟ ଭାବରେ ବଞ୍ଚିପାରିବ ।"

ଆମର ଟର୍କି ଖିଆ ସରିଆସିଲା ବେଳକୁ ଶ୍ରୀ ଲିକୀ ଉଦ୍‌ବିଗ୍ନ ହୋଇ ବାରମ୍ବାର ଉପରକୁ ଚାହୁଁଥା'ନ୍ତି ।

ସେ କହିଲେ, "ମୁଁ ଭାବୁଛି, ଅବ୍‌ଦୁଲ ମକ୍କର ଶୀଘ୍ର ଷ୍ଟ୍ର'ବେରୀ ଆଣିଦେବେ ।"

ମୁଁ ଅବାକ୍ ହୋଇ ପଚାରିଲି, "ଜାନୁଆରୀ ମାସ ମଝିର ଥଣ୍ଡାରେ ଷ୍ଟ୍ର'ବେରୀ ?"

"ହଁ, ମୁଁ ପରା ଅବ୍‌ଦୁଲ ମକ୍କରକୁ ନିଉଜିଲାଣ୍ଡ ପଠେଇଛି । ସେଠାରେ ଏବେ ଗ୍ରୀଷ୍ମଋତୁ । ଅବ୍‌ଦୁଲ ହେଉଛି ଏକ ବେତାଳ । ଯଦି ସେ କଥାମାନି ଠିକ କାମ କରିଥିବ, ତେବେ ସେ ଶୀଘ୍ର ଫେରିଆସିବ । କିନ୍ତୁ ଆମ ସମସ୍ତଙ୍କ ଭଳି ବେତାଳମାନଙ୍କର ମଧ୍ୟ କେତେ ବଦ୍‌ଗୁଣ ରହିଛି, ବିଶେଷକରି ତାଙ୍କର କୌତୁହଳ ଖୁବ୍ ବେଶୀ । ଦୂରବାଟକୁ ପଠାଇଲେ ସେମାନେ ବହୁତ ଉପରେ ଉଡ଼ନ୍ତି । ସେମାନେ ସ୍ୱର୍ଗର ପାଖକୁ ଯାଇ ପରୀମାନଙ୍କର କଥା ଶୁଣିବାକୁ ଚେଷ୍ଟା କରନ୍ତି । ଏଥିରେ ରାଗିଯାଇ ପରୀମାନେ ବେତାଳ ଉପରକୁ ତାରା ଫୋପାଡ଼ନ୍ତି । ଫଳରେ ବେତାଳମାନେ ନେଉଥିବା ଜିନିଷ ସବୁ ତଳେ ପଡ଼ିଯାଏ ବା ସେମାନେ ଦରପୋଡ଼ା ହୋଇ ଘରକୁ ଫେରନ୍ତି । ଅବ୍‌ଦୁଲ ଘଣ୍ଟାଏ ହେଲା ଗଲାଣି, ତେଣୁ ସେ ଶୀଘ୍ର ଫେରିଆସିବା କଥା । ସେ ଶୀଘ୍ର ନ ଆସିଲେ ଆମେ ଅନ୍ୟ କିଛି ଫଳ ଖାଇବା ।"

ସେ ଉଠିପଡ଼ିଲେ ଓ ଟେବୁଲର ଚାରିକୋଣକୁ ତାଙ୍କ ଯାଦୁବାଡ଼ିରେ ବାଡ଼େଇଲେ । ପ୍ରତିକୋଣରେ କାଠ ଫୁଲିଉଠିଲା ଓ ଫାଟିଗଲା । ଟେବୁଲ କଣର ଫାଟରୁ ଗୋଟିଏ ଲେଖାଁ ଶାଗୁଆ ଗଛଚାରା ବାହାରିଲା ଏବଂ ବଢ଼ିବାରେ ଲାଗିଲା । ମିନିଟକ ଭିତରେ ସେଗୁଡ଼ିକ ଫୁଟେ ଲେଖାଁ ଉଚ୍ଚା ହୋଇଗଲା । ଗଛଅଗରେ କିଛି ପତ୍ର ଧରିଲା ଓ ମୂଳଆଡ଼କୁ ଗଛର କାଠ ପାକଳ ହୋଇଗଲା । ପତ୍ରରୁ ଜାଣିଲି ଗୋଟିଏ ହେଉଛି ଚେରୀ ଗଛ, ଗୋଟିଏ ନାସପାତି ଗଛ ଓ ତୃତୀୟଟି ଲିଚୁ, ଚତୁର୍ଥ ଗଛକୁ ମୁଁ ଚିହ୍ନିପାରିଲି ନାହିଁ ।

ବଳି ପଡ଼ିଥିବା ଟର୍କିକୁ ଅଲିଭର ଚାରିହାତରେ ଉଠାଇବାରେ ଲାଗିଲା । ଆଉ ପଞ୍ଚମ ହାତରେ ଗୋଟିଏ ସସେଜ ଧରି ଖାଇଚାଲିଥିଲା । ଏହି ସମୟରେ ଅବ୍‌ଦୁଲ ମକ୍କର ଫେରିଆସିଲା । ସେ ଗୋଡ଼ ତଳକୁ କରି ଛାତରେ ଗଳିକରି ତଳକୁ ଖସିଲା ଓ ତା'ର ପଛେ ପଛେ ଛାତଟି ପୁଣି ନିଦା ହୋଇଗଲା । ଠିକ ଯେପରି ଚିଡ଼ିଆଖାନାରେ ପେଙ୍ଗୁଇନଟିଏ ପାଣି ଭିତରକୁ ଡେଇଁପଡ଼ିଲେ ପାଣିରେ ଗାତଟିଏ ହୋଇଯାଏ ଓ ଚଢ଼େଇର ପଛରେ ପୁଣି ମିଶି ସମାନ ହୋଇଯାଏ । କାଚଟାଙ୍କିର ତଳେରହି ଦେଖିଲେ ଚଢ଼େଇର ପାଣି ଭିତରକୁ ଡେଇଁବା କଥା ଯେଭଳି ଦେଖାଯିବ, ଅବ୍‌ଦୁଲର ଛାତବାଟେ ଆସିବା କଥା ଠିକ ସେପରି ଦେଖାଗଲା । ଏହାପରେ ସେ ଟିକିଏ ଥରିଗଲା ଓ ଓହ୍ଲାଇଲା ବେଳେ ଅଲିଭରର ଗୋଟିଏ ବାହୁରେ ଧକ୍କା ଖାଉଖାଉ ରହିଗଲା । ଶେଷରେ ଆଣ୍ଠୁକୁ ବଙ୍କାଇ ଚଟାଣ ଉପରେ ସେ ନିରାପଦରେ ଓହ୍ଲାଇ ପଡ଼ିଲା । ଶ୍ରୀ ଲିକୀଙ୍କ ଆଗରେ ମୁଣ୍ଡ ନୁଆଇଁ ସେ ସମ୍ମାନ ଜଣାଇଲା । ବାଦାମୀ ରଙ୍ଗର ମୁହଁ ଓ ଏକ ଲମ୍ବା ନାକ ସହିତ ଅବ୍‌ଦୁଲ ଗୋଟିଏ ମଣିଷ ପରି ଦିଶୁଥିଲା । କିନ୍ତୁ ତା'ର ପିଠିରେ ଚମଡ଼ାର ହଳେ ଡେଣା ଭାଙ୍ଗିହୋଇ ରହିଥିଲା ଓ ନଖଗୁଡ଼ିକ ସୁନାର ଥିଲା । ମୁଣ୍ଡରେ ସେ ଗୋଟିଏ ପଗଡ଼ି ବାନ୍ଧିଥିଲା ଓ ଦେହରେ ସବୁଜ ରଙ୍ଗର ରେଶମ ପୋଷାକ ପିନ୍ଧିଥିଲା ।



"ହେ ବିଶ୍ୱମୟ, ହେ ଅନ୍ୟାୟବିରୋଧୀ! ଏ ଅଧମ ଅନୁଚର ଆପଣଙ୍କ ପାଇଁ ବିରଳ ଓ ଟଟକା ଫଳ ଆଣି ପହଞ୍ଚିଛି", ସେ କହିଲା ।

"ତୁମ୍ଭର ପରିଶ୍ରମର ଫଳ ପାଇଁ ଧନ୍ୟବାଦ ।"

"ଶେବାର ରାଣୀ ବାଲକିସଙ୍କୁ ପ୍ରଥମେ ଦେଖି ଶାନ୍ତଦୂତ ଡାଭିଡଙ୍କ ପୁତ୍ର ରାଜା ସୋଲମନ ଯେମିତି ଆନନ୍ଦିତ ହୋଇଥିଲେ, ଏହି ନଗଣ୍ୟ ଦାସ ସେମିତି ଅପାର ଆନନ୍ଦ ଅନୁଭବ କରୁଛି । ସୁଖବିନାଶକ ଓ ବନ୍ଧୁବିଚ୍ଛେଦକ ଦୈତ୍ୟମାନେ ସବୁବେଳେ ଏହି ନିବାସଠାରୁ ଦୂରରେ ରୁହନ୍ତୁ ।"

"ତୁମର ଭୟ ଦୂର ହୋଇଛି । ତୁମର ବୁଦ୍ଧି ଅସୀମ ।"

"ହେ ଅସୁର ସଂହାରକ ଓ ପ୍ରେତରାଜ, ତୁମର ଶକ୍ତି ଅସୀମ ।"

"ହେ, ଅବ୍ଦୁଲ ମକ୍କର, ମିଡିଆନାଇଟଙ୍କ ଦୂତ ସାଧୁ ସୋଆଏବଙ୍କ ବାଣୀ ଅନୁସାରେ କୌତୂହଳ ହିଁ ମିଶରର ରାଜା ଫାରୋଙ୍କ ମାର୍ଜାରର ମୃତ୍ୟୁ ଘଟାଇଲା ।"

"ତାହା ଏକ ନିରାଟ ସତ୍ୟ ।"

"ତୁମେ ବର୍ତ୍ତମାନ ଯାଇପାର । ମୋତେ ଠିକ ସମୟରେ ଉଠାଇଦେବ । ମାତ୍ର ରୁହ, ମୋର ଖିଅର ହେବା ପାଇଁ ବ୍ଲେଡ୍ ନାହିଁ । ଲଣ୍ଡନରେ ଦୋକାନ ସବୁ ବନ୍ଦ ହୋଇଗଲାଣି । ତୁମେ ମଣ୍ଟ୍ରିଲ ଯାଇ ଗୋଟିଏ ପ୍ୟାକେଟ ବ୍ଲେଡ୍ ନେଇଆସିବ । ସେଠାରେ ଏବେ ଖରାବେଳ ହୋଇଥିବ ।"

"ମୁଁ ଥରି ଥରି ଆପଣଙ୍କୁ ମାନୁଛି ।"

"ଓ ଦୁଃସାହସୀ ବେତାଳ ! ତୁମେ ଏଭଳି ଥରୁଛ କାହିଁକି?"

"ହେ ଯାଦୁକର ସମ୍ରାଟ ! ଆକାଶର ନିମ୍ନଭାଗ ବ୍ୟୋମଯାନରେ ଭରପୂର । ଯାଦୁଗାଲିଚା ତୁଳନାରେ ମଧ୍ୟ ସେମାନେ ଅଧିକ କ୍ଷୀପ୍ର *(ଏହା ଅବଶ୍ୟ କିଛି ମାତ୍ରାରେ ଅତିରଞ୍ଜିତ)* । ତାଙ୍କର ଗର୍ଜନ ଶେବାର ବିଶାଳ ନଦୀବନ୍ଧର ପତନ ଭଳି ଲାଗୁଛି । ଆଉ ଉପର ଆକାଶରେ ଉଲ୍କାମାନଙ୍କର ଦୌରାତ୍ମ୍ୟ ।"

"ତୁମେ ପାଞ୍ଚମାଇଲ୍ ଉଚ୍ଚ ଆକାଶରେ ଉଡ଼ିଯାଅ । ଏହାକଲେ ତୁମେ ଉଭୟ ବିପଦରୁ ରକ୍ଷା ପାଇପାରିବ । ହେ ଆଦେଶପାଳକ ଓ ନିର୍ଦ୍ଦେଶନିର୍ବାହକ, ତୁମେ ଏବେ ବିଦାୟ ନିଅ ।"

"ପ୍ଲାଟୋଙ୍କର ବୁଦ୍ଧି, ଶିଜ୍ଜଙ୍କର ପରମାୟୁ, ସୋଲୋମନଙ୍କ ଧନ ଓ ଆଲେକଜାଣ୍ଡରଙ୍କ ସଫଳତା ଆପଣଙ୍କୁ ମିଳୁ ।"

"ତାହା ଆହୁରି ବଳିଷ୍ଠ ରୂପରେ ତୁମକୁ ମଧ୍ୟ ମିଳିଯାଉ ।"

ବେତାଳ ଏବେ ଚଟାଣ ଭିତର ଦେଇ ଅନ୍ତର୍ଦ୍ଧାନ ହୋଇଗଲା । ସେ ଓ ଲିକୀ

କଥା ହେଉଥିବା ଭିତରେ ଗଛଗୁଡ଼ିକ ପ୍ରାୟ ଚାରିଫୁଟ ଉଚ୍ଚ ହୋଇ ଫୁଲ ଧରିଯାଇଥିଲା । ଏବେ ଗଛଗୁଡ଼ିକରୁ ଫୁଲ ଝଡ଼ିପଡୁଥିଲା ଓ ଛୋଟ ସବୁଜ କଷିଫଳ ସବୁ ଫୁଲିବାରେ ଲାଗିଥିଲା ।"

"ବେତାଳମାନଙ୍କ ସହିତ ଏଭଳି କଥାହେବା ଦରକାର । ନହେଲେ ସେ ଆପଣଙ୍କୁ ଉପଯୁକ୍ତ ସମ୍ମାନ ଦେଖାଇବ ନାହିଁ । ତୁମକୁ ଚିହ୍ନାଇ ନ ଦେଇଥିବାରୁ ଦୁଃଖ କରିନଥିବ ବୋଲି ମୁଁ ଆଶା କରୁଛି, କାରଣ ବେଳେ ବେଳେ ବେତାଳମାନେ ଭାରି ଅଖାଡୁଆ ହୋଇପଡ଼ନ୍ତି", ଲିକୀ କହିଲେ ।

"ଅବଶ୍ୟ ଅବ୍ଦୁଲ ମଙ୍କର ଭଲ ଜୀବଟିଏ । ତଥାପି କେବେ ହୁଏତ ସେ ଆପଣଙ୍କୁ ହଇରାଣ କରିଥା'ନ୍ତା । କାରଣ ତାକୁ ବିଦା କରିବାର ଭାଷା ଆପଣଙ୍କୁ ଜଣାନାହିଁ । ଧରନ୍ତୁ ଆପଣ କ୍ରିକେଟ ଖେଳୁଛନ୍ତି ଓ ଜଣେ ଫାଷ୍ଟ ବୋଲର ବିପକ୍ଷରେ ବ୍ୟାଟ ଧରିଛନ୍ତି । ଅବ୍ଦୁଲ ହୁଏତ ଯାଇ ସେଠାରେ ପହଞ୍ଚିଯିବ ଓ ପଚାରିବ - 'ଓ, ୱିକେଟର ଜଗୁଆଳୀ, ମୁଁ ତାଙ୍କୁ ହତ୍ୟା କରିବି କି? ନଚେତ ତାଙ୍କୁ ମୁଁ ବିକୃତ ଦେଖାଯାଉଥିବା ପୋକଭରା ବୋଦା ବନାଇଦେବି କି?"

"ଆପଣ ଜାଣନ୍ତି, ଆଗରୁ ମୁଁ ଭାରି କ୍ରିକେଟ ପ୍ରିୟ ଥିଲି । ଏବେ କିନ୍ତୁ ମୁଁ କ୍ରିକେଟ ଖେଳ ଦେଖିପାରୁ ନାହିଁ । କାରଣ ଟିକିଏ ଯାଦୁ କରିଦେଲେ ପୂରା ଖେଳ ଏପଟ ସେପଟ ହୋଇଯିବ । ଗତବର୍ଷ ଗ୍ଲୋସେଷ୍ଟର ବିରୋଧରେ ଅଷ୍ଟ୍ରେଲିଆର ଖେଳ ଚାଲିଥିଲା । ମୁଁ ଗ୍ଲୋସେଷ୍ଟର ଦଳ ପାଇଁ ଟିକିଏ ସହାନୁଭୂତିଶୀଳ ହୋଇ ପଡ଼ିବାରୁ ଅଷ୍ଟ୍ରେଲିଆର ଖେଳାଳୀମାନେ ଧଡ଼ାଧଡ଼ ହୋଇ ଆଉଟ ହୋଇଗଲେ । ଖେଳ ସରିବା ଆଗରୁ ଯଦି ମୁଁ ପଳାଇ ଆସିନଥା'ନ୍ତି, ତେବେ ସେମାନେ ନିଶ୍ଚୟ ହାରିଯାଇଥା'ନ୍ତେ । ଏହାପରେ ମୁଁ ଆଉ କେଉଁ କ୍ରିକେଟ ଖେଳକୁ ଯାଇପାରିଲିନାହିଁ । କାରଣ ସମସ୍ତେ ଚାହାନ୍ତି ଯେ ଭଲ ଦଳଟି ହିଁ ଜିତୁ ।"

"ତା'ପରେ ଆମେ ନିଉଜିଲାଣ୍ଡରୁ ଆସିଥିବା ଷ୍ଟ୍ର'ବେରୀରେ ଫିଲିସ୍‌ର ଲହୁଣୀ ଦେଇ ମଜାରେ ଖାଇଲୁ । ସେଗୁଡ଼ିକ ଖୁବ୍ ସୁଆଦିଆ ଥିଲା । ଆମେ ଖାଇବା ସମୟରେ ଏକ ଚଳନ୍ତା ଚୁଲି ପରି କାମ କରୁଥିବା ପକ୍ଷୀ ପୁଣି ବାହାରକୁ ଆସିଲା ଓ *ୱେଲ୍‌ଶ ରେଆର୍‌ବିଟ* (ଛେନାଦିଆ ପାଉଁରୁଟି) ପାଇଁ କିଛି ଛେନା ତରଳାଇଲା । ଏ ଭିତରେ ଗଛରେ ଫଳ ସବୁ ପାଚିଯାଇଥିଲା । ତେଣୁ ତା'ପରେ ଆମେ ଫଳ ଖାଇବାକୁ ଆରମ୍ଭ କଲୁ । ଚତୁର୍ଥ ଗଛଟିରେ ମଧ୍ୟ ସୁନା ରଙ୍ଗର ବଡ଼ ବଡ଼ ଫଳ ହୋଇଥିଲା । ମୋର ବନ୍ଧୁ ଲିକୀ କହିଲେ ଯେ ତାହା ହେଉଛି ଆମ୍ବ, ଯାହା ସାଧାରଣତଃ ଭାରତରେ ପ୍ରଚୁର ଫଳେ । କିନ୍ତୁ ଏହି ଗଛ ଇଂଲଣ୍ଡରେ ବଢ଼ାଇହେବନାହିଁ, କେବଳ ଯାଦୁ ବଳରେ ହିଁ ସେ

ଫଳ ମିଳିପାରିବ । ମୁଁ ସେଇ ଆମ୍ବରୁ ଗୋଟିଏ ଚାଖିବାକୁ ବାହାରିଲି ।

ଶ୍ରୀ ଲିକୀ କହିଲେ, "ଆହା, ଏହି କ୍ଷେତ୍ରରେ ମୁଁ ବିଲାତର ରାଜାମହାରାଜା, ଓ ଧନୀ ଜମିଦାରମାନଙ୍କଠାରୁ ମଧ୍ୟ ବଡ଼ । କାରଣ ସେମାନେ ଉଡ଼ାଜାହାଜରେ ଆମ୍ବ ମଗାଇ ଆଣିପାରନ୍ତି । ମାତ୍ର ଗୋଟିଏ ଚକଚକିଆ ରାତ୍ରୀ ଭୋଜନରେ ତାହା ଖାଇବାକୁ ଦେଇପାରିବେ ନାହିଁ ।

ମୁଁ ପଚାରିଲି, "କାହିଁକି ହେବନି ?"

"ଏଥିରୁ ଜଣାପଡୁଛି, ତୁମେ କେବେ ଆମ୍ବ ଖାଇନାହଁ । ଆମ୍ବ ହେଉଛି ଏଭଳି ଗୋଟିଏ ଫଳ ଯାହାକୁ ଖାଇବାପାଇଁ ଗାଧୁଆ ଘର ହିଁ ସବୁଠାରୁ ଭଲ ଜାଗା । ଦେଖ, ଏହାର ଚୋପା ବେଶ୍ ଟାଣ, କିନ୍ତୁ ତା'ର ଭିତରଟା ଜୁତୁପୁତିଆ । ତେଣୁ ଚୋପାକୁ କାମୁଡ଼ି କଣାକଲା ମାତ୍ରେ ତା'ର ରସ ଛିଟିକି ପଡ଼ି ସମସ୍ତଙ୍କର ଧଳା ସାର୍ଟକୁ ଖରାପ କରିଦେବ । ତୁମେ କେବେ ଆଗପଟ କଠିନ ଥିବା ସାର୍ଟ ପିନ୍ଧିଛ?"

"ଖୁବ୍ କମ୍ ଥର ମୁଁ ତାହା ପିନ୍ଧିଛି ।"

"ଖୁବ୍ ଭଲ କରିଛନ୍ତି । ଆପଣ ବୋଧେ ଜାଣି ନଥିବେ ଲୋକେ ଏହିପରି ସାର୍ଟ କାହିଁକି ପିନ୍ଧନ୍ତି ? ଏହାର କଥା ବଡ଼ ବିଚିତ୍ର । ପ୍ରାୟ ଶହେ ବର୍ଷ ତଳେ ମେକ୍ସିକୋ ଦେଶର ଜଣେ ଯାଦୁକର ହୁଇଜଟୋପାକୋଟଲ ୟୁରୋପକୁ ଆସିଥିଲେ । ସେ ଏଠାର ଧନୀ ଲୋକମାନଙ୍କ ଉପରେ ଭାରି ବିରକ୍ତ ହୋଇଯାଇଥିଲେ । ସେମାନେ ଧନୀ ହେବାରେ ତାଙ୍କର ଆପତ୍ତି ନ ଥିଲା । ମାତ୍ର ସେମାନେ ଯେମିତି ବେକାର ଖର୍ଚ୍ଚ ସବୁ କରନ୍ତି ଏବଂ ମିଛଗାମ୍ଭୀର୍ଯ୍ୟ ଓ ଗର୍ବ ଦେଖାନ୍ତି ତାହା ସେ ଯାଦୁକରଙ୍କପାଇଁ ବଡ଼ ବିରକ୍ତିକର ଥିଲା । ତେଣୁ ସେ ସେମାନଙ୍କୁ କଇଁଛ କରିଦେବାକୁ ଠିକ କଲେ । ମାତ୍ର ତାହା କରିବାପାଇଁ ଏକା ସମୟରେ ଦୁଇଟି ଅଲଗା ମନ୍ତ୍ର ପଢ଼ିବା ଦରକାର । ଆଉ ମୁଁ ନିଜେ ଜାଣିଛି ଯେ ତାହା କରିବା ସହଜ କଥା ନୁହେଁ ।

ତେଣୁ ହୁଇଜଟୋପାକୋଟଲ ପ୍ରଥମେ ଜଣେ ଇଂରେଜ ଯାଦୁକର ଶ୍ରୀ ବେନେଡିକ୍ଟ ବାର୍ଣ୍ଣାକଲ୍‌ଙ୍କ ପାଖକୁ ଗଲେ ଓ ତାଙ୍କ ପାଖରେ ଥିବା ଗୋଟିଏ ଦୁଇମୁଣ୍ଡିଆ ଶୁଆକୁ ଧାର ମାଗିଲେ । ଏହା ଦେଖିବାକୁ ଋଷିଆ ଓ ଅଷ୍ଟ୍ରିଆ ଦେଶର ଜାତୀୟ ପତାକାରେ ଥିବା ଦୁଇମୁଣ୍ଡିଆ ଇଗଲ ପରି । ତା'ପରେ ସେ ଗୋଟିଏ ମୁଣ୍ଡକୁ ପ୍ରଥମ ମନ୍ତ୍ର ଓ ଆର ମୁଣ୍ଡଟିକୁ ଦ୍ୱିତୀୟ ମନ୍ତ୍ରଟି ଶିଖାଇବାକୁ ଚାହିଁଲେ । ତାହେଲେ ସେଇ ଶୁଆ ତା'ର ଦୁଇ ମୁହଁରେ ମନ୍ତ୍ରଦୁଇଟି ଏକ ସମୟରେ କହିପାରିଥା'ନ୍ତା ଓ ସବୁତକ ଧନୀଲୋକ କଇଁଛରେ ପରିଣତ ହୋଇଥା'ନ୍ତେ । ମାତ୍ର ଶ୍ରୀ ବାର୍ଣ୍ଣାକଲ୍ ତାଙ୍କୁ ଏତେ ନିଷ୍ଠୁର ନ



ହେବାକୁ ବୁଝାଇଲେ । ତେଣୁ ସେମାନେ ଉଭୟ ରାଜି ହେଲେ ଯେ ଶହେ ବର୍ଷପାଇଁ ଇଉରୋପ ଧନୀଲୋକମାନେ କଇଁଛ ପରି କଠିନ ଜାମା ପିନ୍ଧିବାକୁ ବାଧ୍ୟ ହେବେ । ସେମାନେ ମନ୍ତ୍ର କରି ସାର୍ଟତକ ଏମିତି ଟାଣ କରିଦେଲେ । ଏବେ ସେ ମନ୍ତ୍ର ଦୁର୍ବଳ ହୋଇଗଲାଣି, ତେଣୁ ବେଶୀ ଲୋକ ସେଭଳି ସାର୍ଟ ପିନ୍ଧୁନାହାନ୍ତି ।

"ହଁ, ଏବେ ଆପଣଙ୍କର ଆମ୍ବଖିଆ କଥା ବୁଝିବା । ଏଠି ଆପଣ ଖୁବ୍

ନିରାପଦରେ ଆମ୍ବ ଖାଇପାରିବେ । ଟିକିଏ ସମୟ ଦିଅନ୍ତୁ, ମୁଁ ତାକୁ ମନ୍ତୁରି ଦେଉଛି । ତାହେଲେ ସେଥିରୁ ରସ ଛିଟିକି ଆସିବ ନାହିଁ ।

ତା'ପରେ ସେ ମନ୍ତ୍ର ପଢି ଯାଦୁବାଡ଼ିକୁ ବୁଲାଇ ଦେଲେ, ଆଉ ମୁଁ ଆମ୍ବ ଖାଇବା ଆରମ୍ଭ କଲି । ତାହା ବାସ୍ତବିକ ଚମତ୍କାର ଲାଗୁଥିଲା । ସବୁଠାରୁ ଭଲ ଷ୍ଟ୍ର'ବେରୀ ଠାରୁ ବି ଏଇ ଫଳ ଅଧିକ ସୁଆଦିଆ ଥିଲା । ମୁଁ ଏମିତି ମିଠା ଫଳ କେବେ ଖାଇନଥିଲି । ତା'ର ସୁବାସ ଓ ସୁଆଦ କଥା ବୁଝାଇବା କଷ୍ଟ । ସେଥିରେ ଅନେକ ପ୍ରକାରର ବାସ୍ନା ଜିନିଷ ମିଶିରହିଥିଲା ଭଳି ଲାଗୁଥିଲା । ଏମିତିକି ଝୁଣାପରି କିଛି ବାସନା ମଧ୍ୟ ସେଥିରୁ ଆସୁଥିଲା । ସତେ ଯେମିତି ଗ୍ରୀଷ୍ମ ଋତୁରେ ପାଇନ ଜଙ୍ଗଲରୁ ବାସନା ଭାସି ଆସୁଛି । ତା ମଝିର ଚଟକା ଟାକୁଆ ଏତେ ବଡ଼ ଥିଲା ଯେ ତାକୁ ପାଟିରେ ପୂରାଇ ହେବ ନାହିଁ । ଟାକୁଆର ଚାରିପଟେ ପୁଣି ହଳଦିଆ ରଙ୍ଗର କାଦୁଆ ଶସ । ଶ୍ରୀ ଲିକୀଙ୍କର ମନ୍ତ୍ରକୁ ମୁଁ ପରୀକ୍ଷା କରିବାକୁ ଚାହିଁଲି । ତେଣୁ ଜାଣିଶୁଣି ଆମ୍ବଟିକୁ ତଳମୁହାଁ ଧରି ମୋ ଜାମା ଆଡ଼କୁ ଚିପିଦେଲି । କିନ୍ତୁ ସେ ରସ ତଳକୁ ଯିବ କ'ଣ, ଆପେ ଆପେ ମୋ ପାଟି ଭିତରକୁ ଡ଼େଇଁ ପଡ଼ିଲା । ଶ୍ରୀ ଲିକୀ ଗୋଟିଏ ନାସପାତି ଖାଇଲେ ଓ ବାକି ପାଞ୍ଚଟି ଆମ୍ବ ଘରକୁ ନେବା ପାଇଁ ମୋତେ ଦେଲେ । ମାତ୍ର ସେଗୁଡ଼ିକ ମନ୍ତୁରା ହୋଇ ନଥିଲା । ତେଣୁ ମୁଁ ସେଗୁଡ଼ିକ ଗାଧୁଆ ଘରେ ହିଁ ଖାଇଥିଲି ।

ଆମେ ଯେତେବେଳେ ଟୋପିରୁ ବାହାରି ଥିବା କଫି ପିଉଥିଲୁ, ସେତେବେଳେ ଶ୍ରୀ ଲିକୀ ଟେବୁଲର ଗୋଟିଏ କୋଣକୁ ତାଙ୍କ ଯାଦୁବାଡ଼ିରେ ଘଷିଦେଲେ । ସାଙ୍ଗେ ସାଙ୍ଗେ ସେଠାରେ ଅତି କଅଁଳ ସବୁଜ ଘାସ ବଢ଼ିବାକୁ ଲାଗିଲା । ତାହା ପଡ଼ିଆର ଘାସର ଉଚ୍ଚତାକୁ ଆସିଗଲାରୁ ଶ୍ରୀ ଲିକୀ ଫିଲିପ୍‌କୁ ଡାକିଲେ ଓ ସେ ଘାସ ଖୁଆଇଲେ । ତା'ପରେ ଆମେ ଯାଦୁବିଦ୍ୟା, ଫୁଟବଲ, କିଛି ବିଚିତ୍ର ଜାତିର କୁକୁର ଆଦି ବିଷୟରେ କଥାବାର୍ତ୍ତା ହେଲୁ । ଶେଷରେ ମୁଁ ଘରକୁ ଫେରିବାକୁ ଚାହିଁଲି ।

ଶ୍ରୀ ଲିକୀ କହିଲେ, "ଚାଲନ୍ତୁ, ମୁଁ ଆପଣଙ୍କୁ ଘରେ ଛାଡ଼ିଦେଇ ଆସିବି । କିନ୍ତୁ ଯେତେବେଳେ ଆପଣଙ୍କ ହାତରେ ଗୋଟିଏ ଦିନ ଖାଲି ସମୟ ଥିବ, ଏଠାକୁ ଆସି ଦିନଟି ମୋ ସହିତ କଟାଇବେ । ତାହାଲେ ମୁଁ କିପ୍ରକାରର କାମ ସବୁ କରେ ତାହା ଦେଖିପାରିବେ । ଆପଣ ଯଦି ଚାହିଁବେ ଆମେ ସେଦିନ ଅପରାହ୍ନରେ ଭାରତ ବା ଜାଭାକୁ ବୁଲିଯିବା । ସମୟ ପାଇଲେ ମତେ ନିଶ୍ଚୟ କହିବେ । ଏବେ ଏଇ ଗାଲିଚା ଉପରେ ଠିଆ ହୁଅନ୍ତୁ ଓ ଆଖି ବନ୍ଦ କରନ୍ତୁ । କାରଣ ଯାଦୁ ଗାଲିଚାରେ ଯାତ୍ରା କରିବା ଲୋକଙ୍କର ପ୍ରଥମ ଦୁଇତିନି ଥର ମୁଣ୍ଡ ଘୂରାଏ ।

ଆମେ ଗାଲିଚା ଉପରେ ଠିଆ ହେଲୁ । ମୁଁ ଶେଷଥର ପାଇଁ ଟେବୁଲ ଉପରେ

ଆଖି ବୁଲାଇ ଆଣିଲି । ଲିଓପୋଲ୍ଡ ଲୁଣ ଗୋଟାଇସାରି ସେଠାରେ ବିଶ୍ରାମ କରୁଥିଲା ଓ ଫିଲିସ୍ ପାକୁଳି କରୁଥିଲା । ତା'ପରେ ମୁଁ ଆଖି ବନ୍ଦ କରିଦେଲି ଓ ଶ୍ରୀ ଲିକୀ ଗାଲିଚାକୁ ମୋ ଠିକଣା ବତାଇକରି ତାଙ୍କ କାନପିଟା ଶବ୍ଦ କଲେ । ମୋ ମୁହଁରେ ଥଣ୍ଡା ପବନ ପିଟି ହେବାର ମୁଁ ଅନୁଭବ କଲି ଓ ମୋ ମୁଣ୍ଡ ମଧ୍ୟ ଟିକିଏ ଘୂରାଇଲା । ତା'ପରେ ପବନ ପୁଣି ଉଷୁମ ଲାଗିଲା ଓ ଶ୍ରୀ ଲିକୀ ମୋତେ ଆଖି ଖୋଲିବାକୁ କହିଲେ । ଏଭିତରେ ଆମେ ପାଞ୍ଚ ମାଇଲ ଦୂରରେ ଥିବା ମୋର ଘର ଭିତରେ ପହଞ୍ଚି ଯାଇଥିଲୁ । ଘରଟି ଛୋଟ ଥିଲା ଓ ଚଟାଣ ଉପରେ କିଛି ବହି ଓ ଅନ୍ୟ ଜିନିଷ ପଡ଼ିରହିଥିଲା । ତେଣୁ ଗାଲିଚାଟି ଠିକ ଭାବରେ ରହିଲା ନାହିଁ, ବରଂ ପ୍ରାୟ ଫୁଟେ ହେବ ଟେକିହୋଇରହିଲା । ଭାଗ୍ୟକୁ ଗାଲିଚାଟି ବେଶ୍ ଶକ୍ତ ଥିଲା, ତେଣୁ ଆମେ ପଡ଼ିଲୁ ନାହିଁ । ମୁଁ ଚଟାଣକୁ ଓହ୍ଲାଇଲି ଓ ଆଲୁଅ ଲଗାଇ ଦେଲି ।

"ଶୁଭରାତ୍ରୀ!" କହି ଶ୍ରୀ ଲିକୀ ବିଦାୟ ନେବାପାଇଁ ନଇଁପଡ଼ି ମୋର ହାତକୁ ଧରିଲେ ଓ ତାଙ୍କ କାନ ଥାପୁଡ଼େଇବା ମାତ୍ରେ ଗାଲିଚା ସହିତ ସେ ଉଭାଇଗଲେ । ମୁଁ ମୋ ଘରେ ଏକା ଛିଡ଼ାହୋଇରହିଲି । କିନ୍ତୁ ପୂଜାଏ ମଜାଳିଆ ଅନୁଭୂତିରେ ମୋର ଅନ୍ତର ଭରା ଲାଗୁଥିଲା ଏବଂ ମୋର ଆମ୍ବଭରା ହାତ ଜଣାଉଥିଲା ଯେ ଏତେ ସମୟ ଧରି ମୁଁ ସ୍ୱପ୍ନ ଦେଖୁନଥିଲି ।

ତୁମକୁ ଯଦି ଏ କାହାଣୀଟି ଭଲ ଲାଗିବ ତେବେ ଶ୍ରୀ ଲିକୀଙ୍କ କାମରେ ଥରେ ମୁଁ କିପରି ସାହାଯ୍ୟ କରିଥିଲି, ସେ ବିଷୟରେ ଆଉ ଦିନେ କହିବି । ଆଉ ବି କହିବି କିପରି ପମ୍ପେ ଦୁଷ୍ଟାମି କରି ଥରେ ଗୋଟିଏ ଆଗ୍ନେୟଗିରି ଭିତରକୁ ଖସି ପଳାଇଥିଲା । ତେବେ ସେ ସବୁ ବେଶ୍ ଅଲଗା କଥା ହେବ । ତଥାପି ମୁଁ ଆଶାକରୁଛି ଯେ ତୁମେ ମୋର ବନ୍ଧୁ ଶ୍ରୀ ଲିକୀଙ୍କୁ ଜଣେ ଭଲ ମଣିଷ ବୋଲି ଭାବିବ । କାରଣ ମୁଁ ତାଙ୍କୁ ସେହିଭଳି ବୁଝୁଛି ।



# ଯାଦୁକରଙ୍କ ଜୀବନରେ ଦିନଟିଏ

# ଯାଦୁକରଙ୍କ ଜୀବନରେ ଦିନଟିଏ

ଲଣ୍ଡନରେ ରହୁଥିବା ମୋର ଜଣେ ଯାଦୁକର ବନ୍ଧୁ ଶ୍ରୀ ଲିକୀଙ୍କ ସହିତ ଏକ ରାତ୍ରିଭୋଜନ ବିଷୟରେ ମୁଁ ଆଗରୁ କହିଥିଲି । ମୁଁ ତାଙ୍କଠାରୁ ବିଦାୟ ନେବାବେଳେ ତାଙ୍କ ସହିତ ଗୋଟିଏ ଦିନ କଟାଇବାକୁ କଥା ଦେଇଥିଲି । ସେହିଦିନଟି ତାଙ୍କ ପାଖରେ କିପରି କଟିଲା ତାହା ଏବେ କହୁଛି ।

ବେଶ୍ କିଛି ବର୍ଷ ହେଲା ବଡ଼ଦିନ ପୂର୍ବ ସନ୍ଧ୍ୟାରେ ମୁଁ ଲମ୍ବା ମୋଜା ଝୁଲାଇବା ଛାଡ଼ିଦେଇଥିଲି । ତା'ର ଗୋଟିଏ କାରଣ ହେଲା ଏମିତି ଝୁଲାଇବାକୁ ମୋର ଅଧିକ ମୋଜା ନଥିଲା । କାରଣ ମୁଁ ସବୁବେଳେ ପୂରା ପ୍ୟାଣ୍ଟ ପିନ୍ଧେ । ଏମିତିକି ଅଧା ପ୍ୟାଣ୍ଟ ପିନ୍ଧିଲାବେଳେ ବି ମୁଁ ସାଧାରଣ ମୋଜା ପିନ୍ଧିଥାଏ, କାରଣ ଚାହେଁ ଯେ ମୋର ତଳଗୋଡ଼ ଖରା ଖାଇ ଗାଢ଼ ରଙ୍ଗ ହେଉ । ତା'ଛଡ଼ା ମୁଁ ଭାବୁନାହିଁ ଯେ ବଡ଼ଦିନର ଦିଅଁ *(ଫାଦର କ୍ରିଷ୍ଟମାସ୍)* ମୁଁ ଚାହୁଁଥିବା ସବୁ ଜିନିଷ ଗୋଟିଏ ଲମ୍ବା ମୋଜାରେ ଭରିଦେଇ ପାରିବେ । ତେଣୁ ବଡ଼ଦିନ ସକାଳୁ ଯେତେବେଳେ ମୁଁ ନିଦରୁ ଉଠିଲି, ଆଶ୍ଚର୍ଯ୍ୟ ହୋଇ ଦେଖିଲି ମୋର ଗୋଟିଏ ମୋଜା ଖଟ ତଳେ ଓହଳିଛି । ଅଧିକ ଅବାକ୍ ହେଲି ଯେତେବେଳେ ତାହା ଉଠିପଡ଼ି ଖଟ ବାଡ଼ରେ ମୋ ଆଡ଼କୁ ଚାଲି ଚାଲି ଆସିଲା । ଏହା ମୋ ଛାତି ଉପରକୁ ଆସି ନଇଁପଡ଼ିଲା, ଆଉ ସେଥିରୁ କିଛି ଜନିଷ ବାହାରିଲା । ସେହି ଜିନିଷଗୁଡ଼ିକ ହେଲା ଜଉମୁଦଦିଆ ଏକ ଚିଠି, ଗୋଟିଏ ଟର୍କି ଅଣ୍ଡା, ଗୋଟିଏ ମର୍କତମଣି ଖଞ୍ଜାହୋଇଥିବା ଟାଇପିନ୍, ଗୋଟିଏ ନୂଆ ପ୍ରକାର ଫଳ ପରେ ଯାହାକୁ ମୁଁ ଆତ ବୋଲି ଜାଣିଲି ଓ ଏକ ପକେଟ ଡାଏରୀ । ସେହିସବୁ ଉପହାର ଶ୍ରୀ ଲିକୀଙ୍କ ପାଖରୁ ଆସିଥିଲା ବୋଲି ଜାଣିବାରେ ଡେରି ହେଲାନାହିଁ । କାରଣ ମୋର ଅନ୍ୟ କୌଣସି ସାଙ୍ଗ ଏଭଳି ବାଟରେ ଜିନିଷ ପଠାଇ ପାରିନଥା'ନ୍ତେ । ଯେତେବେଳେ ମୁଁ ଚିଠିଟି ଖୋଲିଲି, ସେଥିରେ ଥିଲା ବକ୍ସିଙ୍ଗ ଦିବସର ପରଦିନଟି ତାଙ୍କ ସହିତ କଟାଇବା ପାଇଁ ନିମନ୍ତ୍ରଣ । ଏହାଛଡ଼ା ଚିଠିରେ ସେ ସେଇ ଅଣ୍ଡା ଓ ଫଳ ସମ୍ପର୍କରେ ଜଣାଇଥିଲେ ଏବଂ କହିଥିଲେ ଯେ ସେ

ପିନ ଓ ତାଏରୀ ମନ୍ଥରା ଯାଇଥିବାରୁ କେବେ ହଜିବନାହିଁ । କାରଣ ମୁଁ ସାଧାରଣତଃ ପିନ ଓ ତାଏରୀକୁ ହଜାଇଦିଏ ।

ମୁଁ ନିର୍ଦ୍ଦିଷ୍ଟ ଦିନ ସକାଳେ ଜଳଖିଆ ଖାଇ ଶ୍ରୀ ଲିକୀଙ୍କ ଘରକୁ ଗଲି । ଏଥର ଲିକୀଙ୍କର ବେତାଳ ଅବ୍‌ଦୁଲ ମକ୍କର ଘରର କବାଟ ଖୋଲିଲେ । ସେ ପିତ୍ତଳ ବୋତାମଲଗା ପୋଷାକ ପିନ୍ଧିଥିଲେ ଓ ଦରୱାନ କାମ କରୁଥିଲେ । ସେ ମୋର କୋଟ ଓ ଟୋପି ନେଇ ଝୁଲାଇଦେଲେ । ମାତ୍ର ସେ ଦୁଇଫୁଟ ଦୂରରେ ରହି ଓ କିଛି ନଛୁଇଁ ମୋ ଦେହରୁ କୋଟ ଓ ଟୋପି ଓହ୍ଲାଇ ନେଇଥିଲେ । ଏହା ବଡ଼ ବିଚିତ୍ର ଲାଗିଲା । ମାତ୍ର ସେହି ଘରେ ମୁଁ ଅଦ୍ଭୁତ କଥା ଦେଖିବାରେ ଅଭ୍ୟସ୍ତ ହୋଇଯାଇଥିଲି ।

ମୁଁ ଘରଭିତରକୁ ପଶିଲାରୁ ଶ୍ରୀ ଲିକୀ ମୋତେ ଆନ୍ତରିକତାର ସହ ସ୍ୱାଗତ କଲେ । ଡ୍ରାଗନ ପମ୍ପେ ନିଆଁ ଉପରେ ବସିଥିଲା । ସେ ଖୁସିରେ ତା'ର ଡେଣା ହଲାଇ ମୋତେ ସ୍ୱାଗତ କଲା । ଏଥିରେ ନିଆଁ ଲିଭି ଧୂଆଁ ବାହାରିଲା । ଶ୍ରୀ ଲିକୀ ଟେବୁଲ ଉପରେ ଥିବା ଯାଦୁବାଡ଼ିକୁ ଛୁଇଁବା ମାତ୍ରେ ପମ୍ପେ ତା'ର ଦୁଇଗୋଡ଼ ଭିତରେ ମୁଣ୍ଡ ଗୁଞ୍ଜି ଚୁପଚାପ ଶୋଇପଡ଼ିଲା ।

ଶ୍ରୀ ଲିକୀ କହିଲେ, "ମୁଁ ଭାବିଥିଲି ଆମେ ଜାଭା ଦ୍ୱୀପକୁ ଯାଇ ମଧ୍ୟାହ୍ନ ଭୋଜନ କରିବା । ମାତ୍ର ମୋର କିଛି କାମ ଅଛି ଯାହାକୁ ଆଜି ସକାଳେ ମୁଁ ସାରିବାକୁ ଚାହେଁ । ଆପଣ ମୋ ସାଥିରେ ଯିବେ କି? ଯଦି ନ ଯିବେ ଏଠାରେ ରହନ୍ତୁ ଓ ହୁକା ଟାଣନ୍ତୁ । ମୁଁ ଆପଣଙ୍କ ମନୋରଞ୍ଜନର ବ୍ୟବସ୍ଥା ମଧ୍ୟ କରିଦେବି ।"

ମୁଁ ଉତ୍ତର ଦେଲି, "ଆପଣର ଯଦି କିଛି ଅସୁବିଧା ନ ହୁଏ ତେବେ ମୁଁ ଆପଣଙ୍କ ସାଥିରେ ଯିବି ।"

"ଅସୁବିଧା ଆଦୌ ନାହିଁ, ବରଂ ଆପଣ ସାଙ୍ଗରେ ଆସିଲେ ମୁଁ ବିଶେଷ ଖୁସିହେବି । କିନ୍ତୁ ଆପଣଙ୍କୁ ଅଦୃଶ୍ୟ ହେବାକୁ ପଡ଼ିପାରେ । ତେଣୁ ଆପଣ ଏଠାରେ ଟିକିଏ ଅଭ୍ୟାସ କରିନେଲେ ଭଲ ହେବ, କାରଣ ପ୍ରଥମେ ଏହା ଆପଣଙ୍କୁ ଅବାଗିଆ ଲାଗିବ । ଆପଣ ଏହି ଅନ୍ଧକାରର ଟୋପିଟି ପିନ୍ଧନ୍ତୁ ଓ କୋଠରୀ ଚାରିପଟେ ଥରେ ଦୁଇଥର ବୁଲନ୍ତୁ । ଆପଣ ଯଦି ତଳକୁ ଚାହିଁବେ, ମୁଣ୍ଡ ଘୂରାଇବ । ତେଣୁ ଆପଣ ମୁଣ୍ଡକୁ ସିଧା ରଖି ଆଗକୁ ଚାହିଁବେ ।

ସେ ଗୋଟିଏ କାଗଜ ତିଆରି ଗୋଜିଆ କଳାଟୋପି ମୋତେ ବଢ଼ାଇଦେଲେ । ଏହି ଟୋପିଟି ଦେଖିବାକୁ ଭାରି କଳା । ସାଧାରଣ କଳା କାଗଜ ବା କନାର ରଙ୍ଗଭଳି ତାହା ନଥିଲା, ବରଂ ମହାଶୂନ୍ୟର କୃଷ୍ଣଗର୍ତ୍ତ ଭଳି ଥିଲା । ଦେଖିକରି ତାହା କେଉଁଥିରେ



ତିଆରି ବା ତାହା ଚିକ୍କଣ କି ଖଦଡ଼ିଆ ସେକଥା ଜାଣିହେବନାହିଁ । ହାତକୁ ତାହା କନା ବା ଅନ୍ୟ କିଛି ସାଧାରଣ ଜିନିଷ ଭଳି ମଧ୍ୟ ଲାଗୁନଥିଲା, ବରଂ କଞ୍ଚା ରବର ଭଳି ଖୁବ୍ ନରମ ଓ ଉଷୁମ ଥିଲା । ମୁଁ ତାକୁ ପିନ୍ଧିଲା ମାତ୍ରେ ହଠାତ ମୋର ହାତ ଉଭେଇଗଲା ଓ ମୋତେ ସବୁକିଛି ଟିକିଏ ଅବାଗିଆ ଦେଖାଗଲା । କାହିଁକି ଏମିତି ହେଉଛି ମୁଁ ପ୍ରଥମେ ଭାବିପାରିଲିନାହିଁ । ତା'ପରେ ମୁଁ ଦେଖିଲି ଯେ ମୋର ଛାଇଭଳି ନାକପୁଡ଼ା ଦୁଇଟି ଦେଖାଯାଉନାହିଁ । ନିର୍ଦ୍ଦିଷ୍ଟ ଭାବରେ ଲକ୍ଷନକଲେ ବି ଏଦୁଇଟି ସବୁବେଳେ ମୋର ଆଖି ଆଗରେ ରହିଥାଏ । ମୁଁ ମୋର ଗୋଟିଏ ଆଖି ବୁଜି ଦେଖିବାକୁ ଚେଷ୍ଟାକଲି, ଯେମିତି ଜଣେ ନିଜର ନାକକୁ ଭଲ କରି ଦେଖିବାକୁ ଚାହିଁଲେ କରିଥାଏ । ମୋର ଆଖି ବନ୍ଦହେବା କଥା ମୁଁ ଅନୁଭବ କଲି, ତଥାପି ମୋର ଦେଖିବାରେ କିଛି ଫରକ ରହିଲା

ନାହିଁ । ଏବେ ମୁଁ ବୁଝିଲି ଯେ ମୁଁ ଅଦୃଶ୍ୟ ହୋଇଯାଇଛି, ତେଣୁ ମୋର ନାକ ଓ ଆଖିପତା ସ୍ୱଚ୍ଛ ହୋଇଯାଇଛି । ତା'ପରେ ମୁଁ ମୋ ଦେହ ଓ ଗୋଡ଼ ଆଡ଼କୁ ଚାହିଁଲି, କିନ୍ତୁ କିଛି ବି ଦେଖିପାରିଲିନାହିଁ । ମୋର ମୁଣ୍ଡ ଜୋରରେ ବୁଲାଇଦେଲା । କିନ୍ତୁ ମୋର ଅଦୃଶ୍ୟ ହାତରେ ଟେବୁଲର ଧାରକୁ ଧରି ପକାଇ ମୁଁ ନିଜକୁ ସମ୍ଭାଳିନେଲି ଓ ସିଧା ଆଗକୁ ଚାହିଁଲି । ଅଳ୍ପ ସମୟର ଅଭ୍ୟାସ ପରେ ମୁଁ ସେହି କୋଠରୀ ଭିତରେ ସହଜରେ ଚାଲବୁଲ କରିପାରିଲି ।

ଶ୍ରୀ ଲିକୀ କହିଲେ, "ଆମେ ଯେତେବେଳେ ବାହାରକୁ ଯିବା, ଆପଣ ଟୋପିଟିକୁ ପକେଟରେ ରଖିଦେବେ । ଯେତେବେଳେ ଅଦୃଶ୍ୟ ହେବାକୁ ଚାହିଁବେ, ଆପଣଙ୍କର ଡେଙ୍ଗାଟୋପିର ତଳେ ଏ ଟୋପିଟିକୁ ପିନ୍ଧିନେବେ । ତାହେଲେ ଆପଣଙ୍କର ଲୁଗାପଟା ଓ ଡେଙ୍ଗାଟୋପି ଆଦି ସବୁ ଅଦୃଶ୍ୟ ହୋଇଯିବ ।

ଆମେ ଘରୁ ବାହାରି ରାସ୍ତାରେ ଚାଲିଲୁ । ସେତେବେଳେ ବାରଣ୍ଡାରେ କେହି ନଥିଲେ । କିନ୍ତୁ ମୋର ଡେଙ୍ଗାଟୋପି ଓ କୋଟ ଉଡ଼ିଆସିଲା ଓ ଆପେ ଆପେ ମୋ ଦେହରେ ପିନ୍ଧାଇ ହୋଇଗଲା ।

ଟାକ୍ସିରେ ବସିବା ବେଳକୁ ଲିକୀ କହିଲେ, "ଗଣ୍ଡଗୋଳ କରୁଥିବା ଗୋଟିଏ କୁକୁର କଥା ପ୍ରଥମେ ବୁଝିବାକୁ ହେବ । ସେ ଲୋକଙ୍କୁ କାମୁଡୁଛି । ଯଦି ମୁଁ ତାକୁ ଠିକ ନ କରିବି, ପୋଲିସ ତାକୁ ମାରିଦେବ । ତା'ପାଇଁ କିଛି ଗୋଟେ କରିବାକୁ ପଡ଼ିବ । ତା'ପରେ ଗୋଟିଏ ଚେକ୍‌କୁ ଅଦୃଶ୍ୟ କରିବାକୁ ପଡ଼ିବ ଏବଂ ଆଉ ଗୋଟିଏ ଦୁଇଟି କାମ ମଧ୍ୟ ଅଛି । ଲଣ୍ଡନରେ ବଡ଼ ଧରଣର ଯାଦୁ କରିବା ସମ୍ଭବ ନୁହେଁ । ତାହା ସବୁରି ଦୃଷ୍ଟି ଆକର୍ଷଣ କରିବ । ଆଉ ସେମାନେ ମୋତେ ଶାନ୍ତିରେ ରଖାଇ ଦେବେନାହିଁ । ତାହା ହେବାର ମୁଁ ଚାହେଁନାହିଁ । ତଥାପି, ଛୋଟକାଟିଆ ଭାବରେ ମୁଁ ଲୋକଙ୍କର କିଛି ଉପକାର କରିବାକୁ ଚାହେଁ । ଯେପରି ଆମ ଟାକ୍ସି ଡ୍ରାଇଭରର ମୁହଁରେ ସେହି ଦାଗସବୁ ନଥିଲେ ଭଲ ଲାଗିବ, ନୁହେଁ?

ଆମ ଡ୍ରାଇଭରର ମୁହଁରେ ଗୁଡ଼ାଏ ବ୍ରଣ ଥିଲା । ବ୍ରଣ ଭଲ କରିବାର କିଛି ଅଦ୍ଭୁତ ଔଷଧର ବିଜ୍ଞାପନ ପାଇଁ ତାଙ୍କର ମୁହଁଟି ବେଶ ଉପଯୁକ୍ତ ଥିଲା । ଲିକୀ ତାଙ୍କ ଛତାଟି ଧରିଲେ । ତା'ର ହେଣ୍ଡଲଟି ଏତେ ଅଦ୍ଭୁତ ଦିଶୁଥିଲା ଯେ ତାହା ନିଶ୍ଚୟ ଯାଦୁବାଡ଼ି ହୋଇଥିବ ବୋଲି ମୁଁ ଅନୁମାନ କଲି । ସେ ଛତାର ହେଣ୍ଡଲଟି ହଲାଇବାରେ ଲାଗିଲେ । ମୁଁ ଦେଖିଲି ଡ୍ରାଇଭର ବେକରେ ଥିବା ଦୁଇଟି ବ୍ରଣ କୁଆଡ଼େ ମିଳେଇ ଗଲା । ଆମେ ଯାଉଥିବା ଜାଗାରେ ପହଞ୍ଚିଲା ବେଳକୁ ତା'ର ମୁହଁ ଟମାଟୋ ପରି ଚିକ୍କଣ ହୋଇଯାଇଥିଲା । ସେ କିନ୍ତୁ କିଛି ବି ଜାଣିପାରିନଥିଲା ।

ଶ୍ରୀ ଲିକୀ ତାକୁ ଗୋଟିଏ ମୁଦ୍ରା ଦେଲେ ।

ଡ୍ରାଇଭର କହିଲେ, "ଆଜ୍ଞା, ମୋତେ ଏତିକି କ'ଣ ଦେଲେ ?"

"ଆଉ ଟିକିଏ ଦେଖ", ଲିକୀ କହିଲେ ।

"ହଁ, ହଁ, ଠିକ ଅଛି । ମୁଁ ୧୯୧୪ ମସିହାରୁ ଏପରି ମୁଦ୍ରା ଦେଖିନାହିଁ ।"

ଲିକୀ ମୋତେ କହିଲେ, "ଏଇଟି ମୋର ଗୋଟିଏ ଯାଦୁ ଟଙ୍କାମୁଣି । ଏଥିରୁ ନୋଟ୍ ନୁହେଁ, କେବଳ ସୁନାମୁଦ୍ରା ବାହାରେ । କାରଣ ଛପାକଳ ବାହାରିବା ଆଗରୁ ଏହି ଯାଦୁ ଟଙ୍କାମୁଣି ବାହାରିଥିଲା । ଏବେ ଏଥିଯୋଗୁ ବଡ଼ ଅସୁବିଧା ହେଉଛି । ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବରୁ ସୁନାମୁଦ୍ରା କାରବାର ଥିଲା, ତେଣୁ ମୁଁ ଟଙ୍କା ଦେଲାବେଳେ କେହି ଆଶ୍ଚର୍ଯ୍ୟ ହେଉନଥିଲେ । କିନ୍ତୁ ଏବେ ଅଧିକାଂଶ ଲୋକ ସୁନାମୁଦ୍ରା ଦେଖିନାହାନ୍ତି । ମୁଁ ଡ୍ରାଇଭରକୁ ସେଥିରୁ ଗୋଟିଏ ଦେବାରୁ ସେ ଜାଣିପାରିଲେ ନାହିଁ । ଆଚ୍ଛା, ବର୍ତ୍ତମାନ ପାଖରେ ବେଶି ଲୋକ ନାହାନ୍ତି । ତେଣୁ ଆପଣ ଟୋପିଟି ପିନ୍ଧିପାରନ୍ତି । ଅବଶ୍ୟ, ବେଶୀ ଭିଡ଼ଥିବା ଜାଗାରେ ଅଦୃଶ୍ୟହେବା ଠିକ ନୁହେଁ । କାରଣ ଲୋକମାନେ ଆପଣଙ୍କ ଦେହରେ ଧକ୍କା ଲାଗିବେ, କିନ୍ତୁ କାହାରିକୁ ଦେଖିନପାରି ବହୁତ ଡରିଯିବେ ।

ମୁଁ ଟୋପିଟି ପିନ୍ଧି ଉଭେଇ ଗଲି । ଶ୍ରୀ ଲିକୀ ନିଜ ଆଡ଼କୁ ତାଙ୍କ ଯାଦୁଛତାଟି ଦେଖାଇଲେ । ହଠାତ ସେ ଓ ଛତା ଉଭାନ ହୋଇଗଲେ । କେବଳ ଛତାର ଅଗଟି ଦେଖାଯାଉଥିଲା ଓ ରାସ୍ତାରେ ତାହା ଟିକି ଚଢ଼େଇଟିଏ ପରି ଡେଇଁ ଚାଲିଲା ।

ସେ କହିଲେ, "ଏବେ ଏ ବଗିଚା ଭିତରକୁ ମୋ ପଛରେ ଆସ, କୁକୁରକୁ ଦେଖିବା । ତୁମ ପଛରେ ଫାଟକଟି ବନ୍ଦ କର । ଆମ ଭିତରୁ କାହାକୁ କାମୁଡ଼ିବା ପାଇଁ ଆସିଲେ ମଧ୍ୟ ତାକୁ ଅଟକାଇବ ନାହିଁ । ସେ କାମୁଡ଼ିବ ନାହିଁ ।"

ମୁଁ ଫାଟକ ବନ୍ଦକଲା ମାତ୍ରେ ଗୋଟିଏ ବଡ଼ ଡାହାଳ କୁକୁର ଗର୍ଜନ କରି ଆମ ଆଡ଼କୁ ମାଡ଼ିଆସିଲା । ସେ ରାଗରେ ଥିଲା, କିନ୍ତୁ ହତ୍‌ବଡ଼େଇଲା ପରି ବି ଲାଗୁଥିଲା । କିଛି ସମୟ ପରେ ସେ ଗର୍ଜନ ବନ୍ଦ କରି ଶୁଙ୍ଘିବାରେ ଲାଗିଲା । ହଠାତ ସେ ତା'ର ମନ ସ୍ଥିର କଲାପରି ଲାଗିଲା । ମୁଁ ଭାବୁଛି ଗ୍ରେହାଉଣ୍ଡ ଛଡ଼ା ଅଧିକାଂଶ କୁକୁର ଦେଖିବାଠାରୁ ଶୁଙ୍ଘିବା ଉପରେ ବେଶୀ ଜୋର ଦିଅନ୍ତି । ସେ ଯାହାହେଉ, କୁକୁରଟି ଏବେ ଲିକୀଙ୍କ ଆଡ଼କୁ ଧାଇଁଲା । ସେ କେଉଁଠି ଅଛନ୍ତି ତାହା ମୁଁ ଜାଣିପାରୁଥିଲି । କାରଣ ତାଙ୍କ ଯାଦୁଛତାର ଅଗଟି ଦିଶୁଥିଲା । କୁକୁର ତାପାଖରେ ପହଞ୍ଚିଲା ବେଳକୁ ସେହି ଅଗଟି ଉପରକୁ ଉଠିଗଲା ଓ ସେଥିରୁ କିଛି ବାଦାମି ରଙ୍ଗର ଧୂଆଁ ବାହାରି ଆସିଲା । କୁକୁର କିନ୍ତୁ ଅଟକିଲା ନାହିଁ । ବରଂ ଆଗଠାରୁ ଅଧିକ ଘାବରାଇଗଲା ପରି ଲାଗିଲା । ହଠାତ



ଲିକୀଙ୍କ ବାଁ ଗୋଡ଼ଟି ଆଣ୍ଠୁ ତଳକୁ ଦେଖାଗଲା । ସେ ଦୃଶ୍ୟ କିନ୍ତୁ ଅତି ବିଚିତ୍ର ଥିଲା । କୁକୁରଟି କିଛି ଦେଖିପାରିବାରୁ ଦାନ୍ତ ଦେଖାଇ ତାକୁ କାମୁଡ଼ିବାକୁ ଧାଇଁଗଲା । ଲିକୀ ବା ତାଙ୍କର ବାଁ ଗୋଡ଼ଟି ସ୍ଥିର ଠିଆ ହୋଇଥାଏ । ମୁଁ ଅଟକାଇବା ଆଗରୁ କୁକୁର ତାକୁ କାମୁଡ଼ିଦେଲା । କୁକୁର ରାଗିଗଲେ ପାଟି ମେଲାଇ କେମିତି ସବୁତକ ଦାନ୍ତ ଦେଖାଏ ତାହା ତୁମେ ଜାଣିଥିବ । ମୁଁ ଦେଖିଲି ତା'ର ଦୁଇଧାଡ଼ି ବଢ଼ିଆ ଦାନ୍ତ ଅଛି । କିନ୍ତୁ ସେ କାମୁଡ଼ିଲା ବେଳକୁ ତା'ର ଦାନ୍ତତକ ଶ୍ରୀ ଲିକୀଙ୍କ ପ୍ୟାଣ୍ଟର ଗୋଡ଼ରେ ଗଳିଲା ନାହିଁ । ଦାନ୍ତତକ ବରଂ ବଙ୍କା ହୋଇଗଲା । ଲିକୀ କହିଲେ, "ମୁଁ ତା'ର ଚାରିଟି କଳ ଦାନ୍ତ ଛାଡ଼ିଦେଇ ବାକିଗୁଡ଼ିକୁ ରବର କରିଦେଇଛି । କଳ ଦାନ୍ତରେ ସେ ଖାଦ୍ୟ ଠିକ ଖାଇପାରିବ ।" ଏତିକିବେଳେ କୁକୁରଟିର ମାଲିକ - ଅତି କଠୋର ମୁହଁ ଥିବା ଲୋକ ଜଣେ - ଆସିବାରୁ ଲିକୀ ତାଙ୍କ ଗୋଡ଼ଟିକୁ ପୁଣି ଅଦୃଶ୍ୟ କରିଦେଲେ । କିନ୍ତୁ ସେ ଗୋଡ଼କୁ ଟେକିଦେବାରୁ କିଛି ସମୟ ପାଇଁ କୁକୁରଟି ପବନରେ ଝୁଲି ରହିଲା । କୁକୁରଟି ତା'ର ବଙ୍କା ଦାନ୍ତ ଦୁଇଧାଡ଼ି ଦେଖାଇ ଖୋଲା ଆକାଶରେ ଝୁଲୁଥିବାର ବିଚିତ୍ର ଦୃଶ୍ୟ ଆଗରୁ କେବେ ମୁଁ ଦେଖିନଥିଲି । କିଛିବେଳ ପରେ ସେ ଭୁସ୍ କରି ତଳେ ପଡ଼ିଗଲା ଓ ଗୋଡ଼ ମଝିରେ ଲାଙ୍ଗୁଡ଼ ଜାକିକରି ଦୌଡ଼ି ପଳାଇଲା ।

କୁକୁର ମାଲିକ ଅବାକ ହୋଇ ଆଁ କରି ଚାହିଁରହିଲା । ସେ ଯେତେବେଳେ ଦେଖିଲା ଯେ ଆମ ଅଦୃଶ୍ୟ ହାତରେ ତା'ର ଫାଟକ ଆପେ ଆପେ ଖୋଲିଲା ଓ ପୁଣି ବନ୍ଦହେଲା ସେ ଆଉ ବେଶୀ ଆଶ୍ଚର୍ଯ୍ୟ ହେବା ଅବସ୍ଥାରେ ନ ଥିଲା । ବଗିଚାରୁ ବାହାରିଲା ପରେ ଆମେ ପୁଣି ଦୃଶ୍ୟ ହୋଇଗଲୁ । ମୋତେ ଏଥର ଶାନ୍ତି ଲାଗିଲା । କାରଣ ନିଜର ଦେହକୁ ଦେଖିନପାରିବାର ଅନୁଭୂତି ଅତି ଅସ୍ୱସ୍ତିକର । ଆମେ ଆଉ ଶିଡ଼ି

ଗୋଟିଏ ଟାକ୍ସିରେ ବସିଲୁ । ଲିକୀ କହିଲେ- "ଯଦି ସେ ଲୋକଟିର କିଛି ବୁଦ୍ଧି ଥିବ, ତେବେ ସେ କୌଣସି ମେଳାରେ ରବରଦାନ୍ତ ଥିବା କୁକୁରକୁ ଦେଖାଇ ଓ କାମୁଡ଼ାଇ ବେଶ୍ କିଛି ପଇସା ଆଦାୟ କରିପାରିବ । ଯଦି କେହି ପାଠକ କେବେ ମେଳାରେ ଏମିତି ରବରଦାନ୍ତୀ କୁକୁର ଦେଖିବ, ମୋତେ ଲେଖିବାକୁ ଅନୁରୋଧ । କାରଣ ଫିଡ଼ିଓ ନାମକ ସେହି କୁକୁରକୁ ପୁଣି ଭେଟିବାକୁ ଚାହେଁ ଏବଂ ଜାଣିବାକୁ ଚାହେଁ ସେ ତା'ର ରବର ଦାନ୍ତ ସହିତ ଅଭ୍ୟସ୍ତ ହୋଇପାରିଛି କି ନାହିଁ ?

ମୁଁ ଭାବୁଛି, ତୁମେ ଆଶ୍ଚର୍ଯ୍ୟ ହେଉଥିବ, ମୁଁ କିପରି ଯାଦୁ ବଳରେ ବିଭିନ୍ନ ଜିନିଷକୁ ରବର କରିପାରୁଛି । ୟୁରୋପରେ ଏହା ଏକ ନୂଆକଥା ଥିଲା । ମାତ୍ର ଆଲୁମିନିଅମ, ଷ୍ଟେନ୍‌ଲେସ୍ ଷ୍ଟିଲ୍, ଆସ୍ପିରିନ୍ ବା କୃତ୍ରିମ ରେଶମ ଭଳି ନୂଆ ଉଦ୍ଭାବନ ଉପରେ କାମ କରିବାପାଇଁ ଯାଦୁମନ୍ତ୍ର ବାହାରି ନାହିଁ । ୧୯୧୨ ମସିହାରେ ଜର୍ମାନୀର ବ୍ରୋକେନ୍‌ଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଯାଦୁକର କଂଗ୍ରେସରେ ଯୋଗ ଦେଇଥିବା ବ୍ରାଜିଲର ଜଣେ ଯାଦୁକରଙ୍କଠାରୁ ମୁଁ ଏହି ମନ୍ତ୍ର ଶିଖିଛି । ଏହା ବଦଳରେ ମୁଁ ତାଙ୍କୁ ଲୁହା ଓ ଇସ୍ପାତ ବିଷୟରେ କିଛି ଯାଦୁ ଶିଖାଇଥିଲି । ତାଙ୍କ ଦେଶରେ ଭରିରହିଥିବା ଜାଗୁଆର, ବାଘ, କୁମ୍ଭୀର ଆଦି ଜୀବଙ୍କଠାରୁ ରକ୍ଷାପାଇବାପାଇଁ ଏହି ଯାଦୁ ଭାରି ଉପକାରୀ ହୁଏ । ଅବଶ୍ୟ ସେ ଅଞ୍ଚଳରେ ବହୁତ ରବର ଗଛ ହୁଏ ଏବଂ ଯାଦୁକରମାନେ ରବର ସମ୍ପର୍କରେ ସବୁ କଥା ଜାଣିଥା'ନ୍ତି ।

ଏବେ ଆମେ ମ୍ୟାକ୍‌ଷ୍ଟୁଆର୍ଟ ନାମକ ଜଣେ ମହାଜନଙ୍କ ପାଖକୁ ଯିବା । ଏହା ତାଙ୍କର ପ୍ରକୃତ ନାଁ ନୁହେଁ । ତାଙ୍କର ପ୍ରକୃତ ନାଁ ଭାରି ଲମ୍ବା ଆଉ ଗୁଡ଼ାଏ 'କ୍ଷ' ଅକ୍ଷରରେ ଭରା । ଲୋକମାନମାନଙ୍କର ପ୍ରକୃତ ନାଁ ନ ଜାଣିଲେ ତାଙ୍କ ଉପରେ ଯାଦୁମନ୍ତ୍ର କାମ କରେନାହିଁ । ତେଣୁ ଯାଦୁକରଙ୍କଠାରୁ ରକ୍ଷା ପାଇବାପାଇଁ ମହାଜନମାନେ ନିଜର ପ୍ରକୃତ ନାଁ ଲୁଚାଇଥା'ନ୍ତି । କାରଣ ଯାଦୁକର ଚାହିଁଲେ ସେମାନଙ୍କୁ ସସେଜ୍, କବାଟର ହ୍ୟାଣ୍ଡଲ, ପାଦରମ୍ଭା, ଆରାମଚଉକି ବା ସେମିତି ଅନ୍ୟ କିଛି ଦରକାରୀ ଜିନିଷରେ ପରିଣତ କରିଦେବେ । ଯାଦୁକୁ ନେଇ କିଛି କାମ କରିବାକୁ ଚାହିଁଲେ ନିଜ ନାଁ କିନ୍ତୁ ଲୁଚାଇବା ଅତି ଜରୁରୀ । ତେଣୁ ମୋର ପ୍ରକୃତ ନାମ କେହି ଜାଣନ୍ତି ନାହିଁ, ଯେମିତି ଲଣ୍ଡନର ପ୍ରକୃତ ନାଁ କେହି ବି ଜାଣିନଥା'ନ୍ତି । କେବଳ ଲଣ୍ଡନର ନଗରପାଳ ହିଁ ପ୍ରକୃତ ଗୁପ୍ତ ନାଁ ଜାଣନ୍ତି ଓ ପ୍ରତିବର୍ଷ ତାଙ୍କ ଉତ୍ତରାଧିକାରୀଙ୍କୁ ଦାୟିତ୍ୱ ଦେଲାବେଳେ ସେଇ ନାଁଟି ତାଙ୍କୁ କହିଥା'ନ୍ତି । ନଚେତ ଯାଦୁକରମାନେ ଲଣ୍ଡନକୁ ବଦଳାଇ ଷ୍ଟୋ-ଅନ୍-ଦି-ୱଲ୍ଡ, ବାଲିବନିଅନ୍, ଟିମ୍ବକ୍‌ଟୁ, ଓମ୍ବୋରୋମ୍ବୋଙ୍ଗା ବା ଅନ୍ୟ କୌଣସି ଅଦ୍ଭୁତ ସ୍ଥାନରେ ପରିଣତ କରିପକାନ୍ତେ ।

"ରାଜା ଓ ରାଜକୁମାରମାନଙ୍କର ବହୁତ ନାଁ ଥାଏ । ଏତେ ନାଁ ଥିବାରୁ ସେମାନଙ୍କୁ ଯାଦୁକରିବା ସହଜ ହୋଇନଥାଏ । ପୂରା ନାଁ ନ କହିଲେ କାହାକୁ ଯାଦୁ କରିହୁଏ ନାହିଁ । ପୁଣି ଏଥିପାଇଁ ସେହି ନାଁର ପ୍ରତି ଅଂଶକୁ ଠିକ ଭାବରେ ଉଚ୍ଚାରଣ କରିବାକୁ ହୋଇଥାଏ ଓ ମନ୍ତ୍ରଟି ଗୋଟିଏ ନିଶ୍ୱାସରେ ଗାଇବାକୁ ହୁଏ । ତେଣୁ ରାଜାମହାରାଜାଙ୍କ ନାଁ ଖୁବ୍ ଲମ୍ବା ହୋଇଥାଏ । ଯେପରି, *ଏକଶତସପ୍ତଦଶତମ ଅଗଷ୍ଟସ୍ ବେନ୍‌ହାଦାଦ୍ ସାର୍ଲେମାଗ୍ନେ ଡାଗୋବର୍ଟ ଏଥେଲ୍‌ଉଲ୍‌ଫ ଫ୍ରେଡେରିକ୍ ଜେନ୍‌ସେରିକ୍ ହାର୍ଡିକାନୁଟ୍ ଇକ୍‌ଷ୍ଟ୍ଲିଲକୋଚିଟ୍ଲ ୟେହୋଇଆକିମ୍ କାମେହାମେହା ଲିଓନିଡାସ୍ ମାକ୍‌ସିମିଲିଆନ୍ ନେପୋଲିଅନ୍ ଓବାଡିଆହ୍ ପଲିକ୍ରାଟେସ୍ କ୍ୱିରିନସ୍ ରେହୋବୋମ୍ ସୁବିଲୁଲିଉମା ଟାରାସିକୋଡିସା ଉମ୍‌ସିଲିକାଜି ଭାଲେଣ୍ଟିନିଆନ୍ ୱେନ୍‌ସ୍‌ଲାଉସ୍ ଜେର୍‌କ୍ସେସ୍ ୟୋଶିହିତୋ ଜେଡେକିଆହ୍* । (ତୁମେ ହୁଏତ ଏହି ରାଜାମାନଙ୍କର ନାଁ ସବୁ ଜାଣି ନଥିବ । ଡାଗୋବର୍ଟ ଫ୍ରାନ୍‌ସ୍‌ର ରାଜା ଥିଲେ । ସେ ଜଣେ ଭଲ ରାଜା ଥିଲେ, କିନ୍ତୁ ସେ ପ୍ୟାଣ୍ଟର ଆଗପଟଟି ପଛକୁ ରଖି ପିନ୍ଧୁଥିଲେ । ଇକ୍‌ଷ୍ଟ୍ଲିଲକୋଚିଟ୍ଲ ମେକ୍‌ସିକୋର ଟେକ୍କୁକାର ରାଜା ଓ କୋର୍ଟେଜ୍‌ଙ୍କର ମିତ୍ରପକ୍ଷ ଥିଲେ । ଅନେକ ଜଣ କାମେହେମେହା ହାୱାଇରେ ଓ ସୁବିଲୁଲିଉମା ହିଟ୍ଟିମାନଙ୍କ ଉପରେ ରାଜୁତି କରୁଥିଲେ । ଟାରାସିକୋଡିସା କନ୍‌ଷ୍ଟାଣ୍ଟିନୋପଲ୍‌ର ସମ୍ରାଟ ହେଲେ, କିନ୍ତୁ ତାଙ୍କୁ ତାଙ୍କର ମୂଳ ନାଁ ଇସାଉରିଆନ୍‌କୁ ବଦଳାଇ ପଡ଼ିଥିଲା । ତେଣୁ ସେ ନିଜକୁ ଜେନୋ ବୋଲାଇଲେ । ଉମ୍‌ସିଲ୍‌କାଜି ଦକ୍ଷିଣ ଆଫ୍ରିକାର ମାଟାବେଲିସ୍‌ର ରାଜା ଥିଲେ । କେତେ ଲୋକ ତାଙ୍କୁ ମୋସେଲିକାଟ୍‌ଜେ ଡାକୁଥିଲେ ଓ ଆଉ କେତେ ଡାକୁଥିଲେ ସିଲ୍‌କାଟ୍‌ସ୍ । ଅନ୍ୟ ସବୁ ରାଜା ଇତିହାସ ବହିରେ ବା ବାଇବେଲ୍‌ରେ ଦେଖାଯା'ନ୍ତି ।) ଏତେ ଲମ୍ବା ନାଁ ଗାଇଲା ବେଳକୁ କାହାର ଦମ୍ ରହେନାହିଁ । ବିଶେଷ କରି ଯେତେବେଳେ ଇକ୍‌ଷ୍ଟ୍ଲିଲକୋଚିଟ୍ଲ ଭଳି ନାଁକୁ ପୂରା ଠିକ ଭାବରେ ଉଚ୍ଚାରଣ କରିବାକୁ ହୁଏ ।

"ଏଇ ମ୍ୟାକ୍‌ଷ୍ଟୁଆର୍ଟ ଗରିବଲୋକମାନଙ୍କର କାଳ । ସେ ଯାହା କରଜ ଦିଅନ୍ତି, ତାହାର ଦୁଇ ତିନି ଗୁଣ ଆଦାୟ କରନ୍ତି । ମୁଁ ତାଙ୍କୁ ଏ ଦିଗରେ ସାବଧାନ କରାଇଛି । ସେ ମଧ୍ୟ ମୋ ଉପରେ ଭାରି ଅସନ୍ତୁଷ୍ଟ । ତେଣୁ ମୁଁ ଅଦୃଶ୍ୟ ହୋଇଯିବି ଓ ଦୁଆର ସବୁ ଖୋଲିଦେବି । କିନ୍ତୁ ଜଣେ ଅଦୃଶ୍ୟ ଲୋକ ଦୁଆର ଖୋଲିବାଟା ବଡ଼ ବିଚିତ୍ର ଲାଗେ । ତେଣୁ ଆପଣ ଦୃଶ୍ୟ ରହିଥା'ନ୍ତୁ । ମୁଁ ଆପଣଙ୍କ ପଛେ ପଛେ ଯିବି । ମୁଁ ତାଙ୍କୁ ଏଥର ସସେଜ୍ କରିଦେବିନାହିଁ । ଖାଲି କେତୋଟି ଦସ୍ତଖତକୁ ଅଦୃଶ୍ୟ କରିଦେବି । ଫଳରେ ସେ ଲୋକମାନଙ୍କଠାରୁ ଆଉ ଟଙ୍କା ଆଦାୟ କରିପାରିବନାହିଁ ।"

କାଚଦୁଆର ଲଗା ଗୋଟିଏ ଚକଚକିଆ ବଡ଼ ଅଫିସରେ ଆମେ ଯାଇ ପହଞ୍ଚିଲୁ ।

ମଝିରେ ଶ୍ରୀ ଲିକୀ ନିଜକୁ ଅଦୃଶ୍ୟ କରିଦେଲେ । ମୁଁ ଅଫିସରେ ପହଞ୍ଚି ଏକ ହଜାର ପାଉଣ୍ଡ ଧାର ନେବାକୁ ଚାହିଁଲି । ମୋତେ ମ୍ୟାକ୍‌ଷ୍ଟୁଆର୍ଟଙ୍କ ପାଖକୁ ନେଇଗଲେ । ମୁଁ ଖୁବ୍ ଧୀରେ ଧୀରେ ଚାଲୁଥାଏ ଓ ମୋ ପଛେ ପଛେ ଲିକୀ ଅଦୃଶ୍ୟ ହୋଇ ଚାଲିଥା'ନ୍ତି । ପ୍ରଥମ ଦେଖାରୁ ମ୍ୟାକ୍‌ଷ୍ଟୁଆର୍ଟ ମୋତେ ଭଲ ଲାଗିଲେନାହିଁ । ଯଦି ବି ତରତର ହୋଇ କରଜ ସୁଝିବା ଦରକାର ନଥା'ନ୍ତା ଓ ସରଳ ବା ଚକ୍ରବୃଦ୍ଧି କିଛି ବି ସୁଧ ଲାଗୁନଥା'ନ୍ତା, ତେବେ ମଧ୍ୟ ମୁଁ ତାଙ୍କ ଭଳି ଲୋକଠାରୁ କରଜ ନେବାକୁ ଚାହାନ୍ତିନାହିଁ । ମୋର ଯେବେ ବି ଦରକାର ପଡ଼େ, ମୁଁ ବନ୍ଧୁ ଡକ୍‌ଟର ବାର୍ଣ୍ଣେଟ୍ ଉଲ୍‌ଫଙ୍କଠାରୁ ତାହା ନେଇଥାଏ । ସେ ଭାବନ୍ତି ଯେ ସୁଧ ନେବାଟା ଅତି ଖରାପ କଥା, ତେଣୁ ସେ ବାବଦରେ ମୋର ଏବେ ବି ତାଙ୍କୁ ଅଢ଼େଇ ପଇସା ଦେବାକୁ ବାକି ଅଛି ।

ମୁଁ ଯେତେବେଳେ ମ୍ୟାକ୍‌ଷ୍ଟୁଆର୍ଟଙ୍କୁ ହଜାରେ ପାଉଣ୍ଡ ଧାର ନେବା କହୁଥିଲି, ସେତେବେଳେ ଶୂନ୍ୟରେ ଗୋଟିଏ ଛତାର ବେଣ୍ଟ ଅଗ ଉଡ଼ୁଥିଲା ପରି ଦେଖାଗଲା । ତାହାକୁ ବିଭିନ୍ନ କାଗଜ ଆଡ଼କୁ ଦେଖାଇ ସେଥିରେ ଥିବା ଲେଖା ସବୁକୁ ଲିକୀ ଅଦୃଶ୍ୟ କରିଦେଉଥା'ନ୍ତି । କାଗଜ ଖଣ୍ଡକ ଉପରେ ଯାହା ଲେଖିଲେ କାଳି ଅଦୃଶ୍ୟ ହୋଇଥାଏ । ମ୍ୟାକ୍‌ଷ୍ଟୁଆର୍ଟ କଣେଇ କରି ଛତା ଅଗ ଆଡ଼େ ଚାହିଁଲେ । କିନ୍ତୁ କିଛି କହିଲେ ନାହିଁ । ସେ ହୁଏତ ଭାବିଲେ ଯେ କାଳି ଅଦୃଶ୍ୟ ହେବା ଭଳି ଅଦ୍ଭୁତ କଥା କହିଲେ ମୁଁ ବୋଧେ ତାଙ୍କୁ ପାଗଳ ବୋଲି ଭାବିବି । ତିନି ମିନିଟ ପରେ ଛତାର ମୁଣ୍ଡି ଚଟାଣ ପାଖକୁ ନଇଁ ଆସିଲା । ମ୍ୟାକ୍‌ଷ୍ଟୁଆର୍ଟ ଚାହୁଁଥିବା ସୁଧ ବହୁତ ବେଶୀ ବୋଲି କହି ମୁଁ ମଧ୍ୟ ଯିବାକୁ ବାହାରିଲି । ମୁଁ ଯେମିତି ଦୁଆର ଖୋଲିଲି, ଛତା ମୁଣ୍ଡିଟି ପୁଣି ଉପରକୁ ଉଠିଗଲା ଓ ଜୋରରେ ହଲିବାକୁ ଲାଗିଲା । ନିଅନ୍ ବତୀର ଲେଖା ପରି ବାଇଗଣୀ ରଙ୍ଗର କିଛି ଅକ୍ଷର ସେଥିରୁ ବାହାରିଲା । ପଛଆଡ଼ୁ ତାହା ଏପରି ଦେଖାଯାଉଥିଲା –

ଆର ଥରକୁ ସପେଜ୍

ଭିତରୁ ମ୍ୟାକ୍‌ଷ୍ଟୁଆର୍ଟ ଲେଖାରୁ ବୁଝିଲେ *'ଆର ଥରକୁ ସପେଜ୍'* । ତାଙ୍କ ଆଖି ଆଖି ଢିମା ଢିମା ହୋଇଗଲା, ବହୁତ ତେଲ ଲାଗିଥିଲେ ବି ମୁଣ୍ଡବାଳ ସିଧା ଠିଆ ହୋଇଗଲା ଏବଂ ମୁହଁରୁ ଝାଳ ଗମ୍‌ଗମ୍ ହୋଇ ଝରିଗଲା ।

ଆଉ ଏକ ଟାକ୍ସିରେ ଯାଉଥିଲା ବେଳେ ଲିକୀ କହିଲେ, "ମୁଁ ଭାବୁଛି, ଆଗକୁ ଆଉ କିଛି କରିବାକୁ ପଡ଼ିବ ନାହିଁ । ତାଙ୍କ ଭଳି ଲୋକମାନେ ସହଜରେ ଡରିଯା'ନ୍ତି, ଆଉ ମୁଁ ବି ତାଙ୍କୁ ଏ କାମ ଛାଡ଼ିବାକୁ କହୁନାହିଁ । କେବଳ ଟିକିଏ କମ୍ ନିର୍ଦ୍ଦୟ ହେବାପାଇଁ ମୁଁ ତାଙ୍କୁ କହୁଛି । ବେଶ୍, ମୁଁ ଆଜି ଏତିକି କାମ ହିଁ କରିବି । ଆମେ ମଧ୍ୟାହ୍ନ ଭୋଜନ

କରିବାକୁ କେଉଁଠିକୁ ଯିବା? ମୁଁ ଭାବୁଛି, ଜାଭା ଦ୍ୱୀପ ଠିକ ହେବ । ଓଃ! ନା, ଆଜି ବହୁତ ବିଳମ୍ବ ହେଲାଣି । ସେଠାରେ ଏବେ ସୂର୍ଯ୍ୟ ଅସ୍ତ ହେଉଥିବ । ଆମେ ସେଠି ପହଞ୍ଚିଲା ବେଳକୁ ଅନ୍ଧାର ହୋଇଯାଇଥିବ । ଚାଲ, ଭାରତର କେଉଁ ଜାଗାକୁ ଯିବା । ବର୍ଷର ଏଇ ସମୟରେ ମାଣ୍ଡୁ ବିଲକୁଲ ଠିକ ଥିବ । ଆମେ ଗାଲିଚା ଉପରେ ବସି ଉଡ଼ିଯିବା । ତୁମେ ଗୋଟିଏ ଆକାଶଛତା ପାଖରେ ରଖ । ତାହେଲେ ବାଟରେ ଖସିପଡ଼ିଲେ ଅସୁବିଧା ହେବନାହିଁ । ଆଉ ଏଇ କବଚଟି ବେତାଳ ଓ ରାକ୍ଷସଙ୍କ ପାଇଁ ଏବଂ ମଶାଦାଉରୁ ରକ୍ଷା ପାଇବା ପାଇଁ ଏ ଗନ୍ଧକ ତେଲ ବି ସାଥିରେ ରଖିବାକୁ ହେବ । କିଛି ଉଷୁମ ପୋଷାକ ମଧ୍ୟ ସାଥିରେ ନେବା । ଖରା ପାଇଁ କିଛି ଦରକାର ହେବନାହିଁ, କାରଣ ଏବେ ଅପରାହ୍ନ ତିନିଟା ବାଜିଲାଣି । ଅବଶ୍ୟ ଲଣ୍ଡନ ଟପିଗଲେ ଗରମ ଲାଗିବ ।

ଆମେ ଏଗାରଟା ବେଳକୁ ଫେରିଲୁ । ଲିକୀଙ୍କ ଘରେ ଖୁବ୍ ହୋହଲ୍ଲା ଚାଲିଥାଏ । ସେଠାରେ ବିଭିନ୍ନ ଯାଦୁ କାମ ଘଟୁଥାଏ । କପ୍‌ବୋର୍ଡ ଦ୍ୱାର ଆପେ ଆପେ ଖୋଲୁଥାଏ ଏବଂ ପୋଷାକପତ୍ର, କବଚ, ଯାଦୁବାଡ଼ି, ମନ୍ତ୍ରବହି ଆଦି ବିଭିନ୍ନ ଜିନିଷ ବାହାରକୁ ତେଇଁପଡ଼ି ଗୋଟିଏ ମୁଣିରେ ସଜାଇହୋଇ ରହିଯାଉଥିଲେ । ମୁଣିଟି ଭରିଗଲାରୁ ତାହା ବନ୍ଦ ହୋଇଗଲା ଓ ଗୋଟିଏ ସାପ ପେଡ଼ିରୁ ବାହାରି ମୁଣିତଳେ ପଶି ଉପରେ ବାହାରି ପଡ଼ିଲା । ସେ ଏମିତି ଦୁଇଥର କଲାରୁ ମୁଣିଟି ପାର୍ସଲ ପରି ବାନ୍ଧିହୋଇଗଲା । ଶେଷରେ ସାପଟି ତା'ର ମୁଣ୍ଡ ଓ ଲାଞ୍ଜକୁ ଭଲ ଭାବରେ ଛନ୍ଦିକରି ସେଥିରେ ଫାଶ ପକାଇଦେଲା ।

ଶ୍ରୀ ଲିକୀ କହିଲେ, "ଯାହାହେଉ, କ୍ଲିମେଣ୍ଟିନା (ସାପର ନାଁ) ଦଉଡ଼ିର କାମକରି ମୋର ବେଶ୍ ପଇସା ବଞ୍ଚାଇଦିଏ । ସେ ମୋ ମୁଣି ସହିତ ବୁଲି ଦୁନିଆ ଦେଖେ, ଆଉ କେହି ମୋ ଜିନିଷ ଚୋରି କରିବାକୁ ଚାହିଁଲେ ସେଥିରେ ବାଧା ବି ଦିଏ । ଆମେ ଖୁବ୍ ଉଚ୍ଚରେ ଉଡ଼ିବା, ତେଣୁ ମୁଁ ଆପଣଙ୍କ ଉପରେ କିଛି ଯାଦୁ ପ୍ରୟୋଗ କରିବି । ପାଞ୍ଚ ମାଇଲ ଉଚ୍ଚ ଆକାଶରେ ପବନ ବେଶ ପତଳା, ତେଣୁ ସେଠାରେ ଚଳିବା ପାଇଁ ଅଧିକ ରକ୍ତ ଓ ଆଉ କିଛି ଜିନିଷ ଦରକାର ହୁଏ । ଅବଶ୍ୟ, ମୁଁ ଆପଣଙ୍କୁ ଅମ୍ଳଜାନ ଯନ୍ତ୍ରଟିଏ ଦେଇପାରିବି, ଯାହା ସାହାଯ୍ୟରେ ଆପଣ ଆକାଶଚାରୀଙ୍କ ପରି ଉଡ଼ିପାରିବେ । ମାତ୍ର ତାହା ଅଚଳ ହୋଇଗଲେ କ'ଣ କରିବାକୁ ହେବ ତାହା ମୋତେ ଜଣାନାହିଁ । ତେଣୁ ମୁଁ ଏସବୁ ଯନ୍ତ୍ରପାତି ବ୍ୟବହାର କରେନାହିଁ । ପୁରୁଣାକାଳିଆ ଯାଦୁ ହେଉଛି ସବୁଠାରୁ ଭଲ । ମୁଁ ଆପଣଙ୍କୁ କିଛି ମନ୍ତ୍ରପାଣି ଖୁଆଇଲେ ତାହା ପ୍ରାୟ ଅଧ ଘଣ୍ଟା ପରେ ଯାଇ କାମ କରିବ । ତେଣୁ ଆପଣଙ୍କ ଦେହରୁ ଖଣ୍ଡେ ଖୋଲିକରି ମନ୍ତ୍ରପାଣିକୁ ସିଧା ଦେହ ଭିତରକୁ ଛାଡ଼ିଦେବି । ଆପଣ ଏଠି ବସନ୍ତୁ ଓ ବାଁ ଗୋଡ଼ ଏଇ ଷ୍ଟୁଲ ଉପରେ ରଖନ୍ତୁ, ମୁଁ ଆପଣଙ୍କ ପାଦକୁ ଖୋଲିବି । ଅଲିଭର, *ହର୍ମେସ୍ ଟ୍ରିସ୍‌ମେଜିଷ୍ଟସ୍* ତୃତୀୟ ଖଣ୍ଡଟି ଦିଅ ତ!"

ଅକ୍ଟୋପସ ଅଲିଭର ଏଯାଏଁ ଧୀରସ୍ଥିର ହୋଇ ତା'ର ଡମ୍ବା ପାଣିକୁଣ୍ଡରେ ବସିଥିଲା । ଲିକୀଙ୍କ କଥା ଶୁଣି ସେ ହଠାତ ଦୁଇଟି ବାହୁ ଟେକିଦେଲା ଓ ଗୋଟିକରେ ତଉଲିଆ ନେଇ ଆର ହାତଟିକୁ ପୋଛି ଶୁଖାଇଲା । ଶୁଖିଲା ହାତରେ ବହିଥାକରୁ ଗୋଟିଏ ବିରାଟ ବହି - ପ୍ରାୟ ଦୁଇଫୁଟ ଲମ୍ବ ଓ ଫୁଟେ ଚଉଡ଼ା - ବାହାରକରି ବଢ଼ାଇଦେଲା । ଲିକୀ ବହିର ପୃଷ୍ଠା ଓଲଟାଇ ଗୋଟିଏ ମନ୍ତ୍ର ପଢ଼ିଲେ । ତା'ପରେ ସେ ମୋର ଜୋତା ସହିତ ବାଁ ପାଦକୁ ଧରିଲେ ଏବଂ ମୋଡ଼ିକରି ବଳାଗଣ୍ଠିରୁ ଖୋଲିନେଲେ । ମୋତେ ଟିକିଏ ବି କଷ୍ଟ ହେଲାନାହିଁ, କିନ୍ତୁ ପାଦ ନ ଥିବା ଗୋଡ଼ଟି ଟିକିଏ ଅବାଗିଆ ଦିଶୁଥିଲା । ଟିକିଏ ବି ରକ୍ତ ବାହାରିଲାନାହିଁ, କିନ୍ତୁ ଗୋଡ଼ର ଦୁଇଟିଯାକ ହାଡ଼ ମୁଁ ଦେଖିପାରୁଥିଲି । ସେ ସାଇକେଲ ପମ୍ପ ଭଳି ସୁନାର ଗୋଟିଏ ଜିନିଷ ଆଣିଲେ ଓ ସେଥିରୁ କିଛି ପାଣିଆ ଜିନିଷ ମୋର ଥୁଣ୍ଟା ଗୋଡ଼ ଭିତରକୁ ପିଚ୍‌କରି ଛାଡ଼ିଦେଲେ । ସେତେବେଳେ ମୋତେ ଭାରି ଭଲ ଉଷୁମ ଲାଗିଲା । ମୋ ଗୋଡ଼କୁ ସେ ପୁଣି ଯୋଡ଼ିଦେଲେ, କିନ୍ତୁ ଯୋଡ଼େଇ ଦାଗଟି ଦିଶୁଥାଏ । ସେ ଆଉ ଗୋଟିଏ ମନ୍ତ୍ର ପଢ଼ିଦେବାରୁ ମୋ ଗୋଡ଼ ପୂରା ଆଗଭଳି ହୋଇଗଲା ।

ସେତେବେଳେ ଅବ୍‌ଦୁଲ ମକ୍କର ଘରକୁ ପଶିଆସିଲା । ଏଥରକ ସେ ଗୋଟିଏ ବେତାଳ ପରି ଦେଖାଯାଉଥିଲା । ମୁଣ୍ଡରେ ପଗଡ଼ି ଓ ଦେହରେ ରେଶମର ଶାଗୁଆ ଲମ୍ବା



ପୋଷାକ ସେ ଏବେ ପିନ୍ଧିଥିଲା । ଆଗରୁ କୋଟ ତଳେ ଲୁଚିରହିଥିବା ଡେଣା ଦୁଇଟି ଏବେ ଦେଖାଯାଉଥିଲା ।

ଶ୍ରୀ ଲିକୀ କହିଲେ, "ଏହି ବେଶରେ ଭଲ ଦେଖାଯାଏ । କିନ୍ତୁ ସାଧାରଣ ଲୋକଙ୍କ ପାଇଁ ଦୁଆର ଖୋଲିଲାବେଳେ ମୁଁ ଚାହେଁ ଯେ ସେ ତାଙ୍କ ଡେଣା ଲୁଚାଇରଖନ୍ତୁ । ନହେଲେ ଲୋକମାନେ ଡରିଯିବେ । ଅବଶ୍ୟ ଏଭଳି ଲମ୍ବା ପଛ ଥିବା କୋଟ ପାରସ୍ୟ ଦେଶରୁ ଆସିଛି । ଏଠାରେ କେବଳ ରାଜା ଦ୍ୱିତୀୟ ଚାର୍ଲସଙ୍କ ସମୟରୁ ଲୋକେ ତାହାକୁ ପିନ୍ଧୁଛନ୍ତି । ପାରସ୍ୟର ରାଜା ନୁସିରଭାନ ତାହାକୁ ଉଦ୍ଭାବନ କରିଥିଲେ । ତାଙ୍କ ଦରବାରରେ ଅନେକ ଡେଣାଥିବା ବେତାଳ ଥିଲେ । ସେ ଭାରି ନ୍ୟାୟବନ୍ତ ଥିଲେ ଏବଂ ନିଜ ଛଡ଼ା ଅନ୍ୟ ସମସ୍ତଙ୍କ ଭିତରେ ସମାନତାରେ ବିଶ୍ୱାସ କରୁଥିଲେ । ସେ ମଣିଷ ଓ ବେତାଳଙ୍କ ମଧ୍ୟରେ ପାର୍ଥକ୍ୟ ରଖିବାକୁ ଚାହିଁନଥିଲେ । ତେଣୁ ସେ ଏପରି ପୋଷାକ ବାହାର କରିଥିଲେ ଯାହା ଉଭୟଙ୍କ ପାଇଁ ଉପଯୁକ୍ତ ହୋଇଥିଲା । ପରେ ତାଙ୍କର କୁହୁକ ମୁଦି ଚୋରି ହୋଇଯିବାରୁ ବେତାଳମାନେ ତାଙ୍କୁ ଛାଡ଼ି ଚାଲିଯାଇଥିଲେ । କିନ୍ତୁ ପାରସ୍ୟର ଲୋକମାନେ ଆଜି ପର୍ଯ୍ୟନ୍ତ ସେଇ ଲମ୍ବା ପଛ ଥିବା କୋଟ ପିନ୍ଧି ଆସୁଛନ୍ତି ।



ଅବଦୁଲ ମକ୍କର କହିଲେ, "ହେ ଯାଦୁକର ସମ୍ରାଟ, ଆପଣଙ୍କର ଅଯୋଗ୍ୟ ଓ ଦରିଦ୍ର ଦାସ ପକ୍ଷେ ଗୋଟିଏ ବର ମାଗୁଛି ।"

"ହେ ଚାତକଠାରୁ ଦ୍ରୁତଗାମୀ, କି ବର ଦରକାର ?"

"ଆମ ଯାତ୍ରାରେ ସାଥି ହୋଇ ଯିବାକୁ ସେ ଚାହୁଁଛନ୍ତି ଓ ବଚନ ଦେଉଛନ୍ତି ଯେ ମହମ୍ମଦଙ୍କ ଶାନ୍ତି ଅଭିଯାନର ଓଟପରି ସେ ନିରୀହ ଓ ନିର୍ଦ୍ଦୋଷ ଆଚରଣ କରିବେ ।"

"ଶନିବାର ଦିନର ସେଣ୍ଟ ଲୁସିଙ୍କ ଭୋଜନରେ ମୋର ସସେଜ୍‌କୁ ପୋଡ଼ିଦେବା ପରଠାରୁ ତାଙ୍କର ଆଚରଣ ସନ୍ତୋଷଜନକ ଅଛି । ତାଙ୍କ ଅନୁରୋଧ ଅନୁମୋଦିତ

ହେଲା । ତାଙ୍କର ମନୋରଥ ପରିପୂର୍ଣ୍ଣ ହେବ । ଗାଲିଚା ଉପରେ ଆଉବେଷ୍ଟସ ପକାଇ ତାଙ୍କର ଉହ୍ମେଇ ରଖ, ସେଥିରେ ସେ ବସିବେ । ମୋର ଅତିଥିଙ୍କୁ ଗୋଟିଏ ଆକାଶଛତା ଓ ଲାଇଫବେଲ୍ଟ ଦିଅ । ଗାଲିଚାରୁ ପଡ଼ିଗଲେ ଆକାଶଛତା ସହାୟକ ହେବ ଏବଂ ଦ୍ୱିତୀୟଟି ସମୁଦ୍ର ମଧ୍ୟରେ ଓହ୍ଲାଇବାକୁ ହେଲେ ସାହାଯ୍ୟ କରିବ ।"

ମୁଁ ଆକାଶଛତା ଓ ଲାଇଫବେଲ୍ଟ ଦୁଇଟି ପିନ୍ଧିଲି ଓ ଗୋଟିଏ ଯାଦୁବାଡ଼ି ଧରିଲି । ଯୁଦ୍ଧଭୂମିରେ ଜଣେ ସୈନିକ ପରି ମୋତେ ଲାଗୁଥିଲା । ୧୯୧୮ରେ ଇଂରେଜ ସୈନ୍ୟମାନେ ଲାଇଫବେଲ୍ଟ ପିନ୍ଧି ଜର୍ମାନ୍‌ମାନଙ୍କୁ ଆକ୍ରମଣ କରିଥିଲେ । କାରଣ ସେମାନଙ୍କୁ କେନାଲ ଅତିକ୍ରମ କରିବାକୁ ହୋଇଥିଲା । ଅବ୍‌ଦୁଲ ମକ୍କର ଗୁଡ଼ା ହୋଇଥିବା ଗୋଟିଏ ଗାଲିଚା ଆଣିଲେ ଓ ତାକୁ ଅଧା ଖୋଲିଦେଲେ । ତା'ଉପରେ କିଛି ବିଚିତ୍ର ପ୍ରକାରର ଚିତ୍ର ରହିଥିଲା ଓ ଆରବୀୟ ଭାଷାରେ କିଛି ଲେଖା ଯାଇଥିଲା । ଗାଲିଚାର ବାକି ଅଧିକ ଖୋଲିବା ପାଇଁ ଘର ଭିତରେ ଜାଗା ନଥିଲା । ଆମେ ଗାଲିଚାରେ ବସିଲୁ ଓ ଅବ୍‌ଦୁଲ ମକ୍କର କ୍ଲିମେଣ୍ଟିନାକୁ ଧରି ମୁଣିଟିକୁ ଉଠାଇଆଣି ଆମ ପାଖରେ ରଖିଲେ । କେତେଗୁଡ଼ିଏ ତକିଆ ମଧ୍ୟ ସେ ଆମ ପାଖରେ ରଖିଦେଲେ । ଏହାପରେ ସେ ଲାଲ ଟକଟକ ଜଳନ୍ତା କୋଇଲାରେ ଭରା ଗୋଟିଏ ଉହ୍ମେଇ ଆଣି ଥୋଇଲେ ଓ ପମ୍ପେ ଚୂଲି ପାଖରୁ ଉଡ଼ିଆସି ତାହା ଉପରେ ଗୋଲହୋଇ ଶୋଇଗଲେ । ମୁଁ ଦେଖିଲି ଯେ ଅବ୍‌ଦୁଲ ମକ୍କର ଖାଲି ହାତରେ ସେ ଗରମ ଉହ୍ମେଇକୁ ଧରିଥିଲେ । ଅବଶ୍ୟ ବେତାଳମାନେ ବିନା କଷ୍ଟରେ ଏମିତି କରିପାରନ୍ତି । ଆଉ ଆମେ ବାକି ସମସ୍ତେ ଗଦି ପକାଇ ବସିଲୁ ।

"ଆଖି ବୁଜିକରି ବସନ୍ତୁ । ନଚେତ ଆମେ ଉଡ଼ିବାକୁ ଆରମ୍ଭ କଲେ ମୁଣ୍ଡ ବୁଲାଇପାରେ", ଲିକୀ କହିଲେ । ମୁଁ ସେଇଆ କଲି । ତା'ପରେ ମୁଁ ଶୁଣିଲି ତାଙ୍କର ମୁଣ୍ଡ ହଲାଇ କାନ ପିଟିବାର ଶବ୍ଦ । ଗାଲିଚା ମଧ୍ୟ ଉପରକୁ ଉଠିଲା ପରି ଲାଗିଲା । ଆମେ କେମିତି ଛାତ ଭିତର ଦେଇ ଉପରକୁ ଉଠିଲୁ ତାହା ମୁଁ ଜାଣିନାହିଁ । କିନ୍ତୁ ତାହା ବେଶ୍ ଅଖାଡୁଆ ଲାଗିଲା । ଆମେ ଖୁବ୍ ଜୋରରେ ଉଠୁଥିବା କଥା ମୁଁ ଅନୁଭବ କଲି । ତା'ପରେ ଆମେ ତଳକୁ ଖସିବାରେ ଲାଗିଲୁ । ମୁଁ ମୋ ଦାନ୍ତ ଚିପି ଭଲରେ କିପରି ପହଞ୍ଚିବୁ ସେହି ଆଶାରେ ରହିଲି । ଆଖି ଖୋଲିବାକୁ କହିବାରୁ ମୁଁ ଚାହିଁଲି ଓ ଭଲ ଖରା ପଡ଼ିଥିବାର ଦେଖିଲି । ଅବଶ୍ୟ ଲଣ୍ଡନରେ ଟିକିଏ ମେଘୁଆ ହୋଇଥିଲା । ଏବେ ଗାଲିଚାଟି ପୂରା ଖୋଲିଯାଇଥିଲା । ମୁଁ ଗାଲିଚାର ଧାରକୁ ଯାଇ ତଳକୁ ଚାହିଁଲି । କିନ୍ତୁ ତଳେ କେବଳ ମେଘର ସାଗର ଦିଶୁଥିଲା । ଆମେ ସେ ମେଘର ଉପରେ ଦକ୍ଷିଣପୂର୍ବ ଦିଗକୁ ଖୁବ୍ ଜୋରରେ ଯାଉଥିଲୁ । କିନ୍ତୁ ଆମ ଦେହରେ ପବନ ପିଟି ହେଉନଥିଲା ।

"ଅବଶ୍ୟ କୁହୁକ ଗାଲିଚା ଚାରିପଟର ପବନ ତାହା ସହିତ ହିଁ ଯାଉଛି । ତାହା ନ ହେଲେ ଆମେ ସବୁ କୁଆଡ଼େ ଉଡ଼ି ପଳାନ୍ତେ । ଆମ ପାଖର ପବନକୁ ଉଷୁମ ରଖିବା ପାଇଁ ମଧ୍ୟ ଏକ ସ୍ୱତନ୍ତ୍ର ମନ୍ତ୍ର ମୁଁ କରିଛି", ଲିକୀ ବୁଝାଇଦେଲେ । ମେଘର ଫାଙ୍କରେ କେତେ ସେକେଣ୍ଡ ପାଇଁ ମୁଁ ଇଂଲିଶ ଚାନେଲକୁ ଦେଖିଲି । ତା'ପରେ ଆମେ ଫ୍ରାନ୍ସ ଉପରେ ଉଡ଼ିଗଲୁ । ଆମର ବାଁ ପଟେ ପ୍ୟାରିସ୍ ପଡ଼ିଲା । ତା'ର ଆଇଫେଲ୍ ଟାୱାର ଓ *ସାକ୍ରେ କୋର* ଗୀର୍ଜା ଆଖିରେ ପଡ଼ିଲା । ଆମେ ଆଉ କିଛି ମେଘ ଉପରେ ଉଡ଼ିଲୁ ଓ କିଛି ସମୟ ପରେ ଆମର ଆଗରେ ବାଁ ପଟକୁ ଆଲ୍‌ପସ ପର୍ବତପୁଞ୍ଜ ଦେଖାଗଲା । ତାହାକୁ ଆମେ ବିନା ଅସୁବିଧାରେ ଟପିଗଲୁ । ଆମେ ମଣ୍ଟବ୍ଲାଙ୍କର ଦୁଇ ମାଇଲ ଉପରେ ଉଡ଼ିକରି ଗଲୁ ଏବଂ ଉତ୍ତର ଇଟାଲୀ ଓ ଆଡ୍ରିଆଟିକ୍ ସମୁଦ୍ର ଉପରେ ମଧ୍ୟ ପାରହେଲୁ । ଆରମ୍ଭର ପ୍ରାୟ ଦଶ ମିନିଟ୍ ପରେ ଆମେ ଦକ୍ଷିଣ ଗ୍ରୀସ ଉପରେ ଉଡ଼ିଯିବା ସମୟରେ ଅନେକ ଉଚ୍ଚ ପର୍ବତ ଦେଖାଗଲା । ସୂର୍ଯ୍ୟ ଏବେ ଆକାଶରେ ବେଶ୍ ଉପରକୁ ଉଠିଯାଇଥିଲେ । ଇଂରେଜ ପ୍ରଣାଳୀ ତୁଳନାରେ ଭୂମଧ୍ୟସାଗର ଖୁବ୍ ସୁନ୍ଦର ନୀଳ ଦେଖାଯାଉଥିଲା । ତାହା ଉପରେ ଗଲାବେଳେ ଲିକୀ ମୋ ବେକରେ ଏକ କବଚ ଝୁଲାଇଦେଲେ ।

ସେ କହିଲେ, "ଆସନ୍ତା ଦଶ ମିନିଟ୍ ଭିତରେ ଆମେ ହୁଏତ ଟିକିଏ ଅସୁବିଧାରେ ପଡ଼ିପାରେ । ଆପଣଙ୍କର ମନେଥିବ, ରାଜା ସୋଲୋମନ୍ ଗୁଡ଼ାଏ ଦୁଷ୍ଟ ବେତାଳଙ୍କୁ ବୋତଲ ଭିତରେ ବନ୍ଦୀକରି ସମୁଦ୍ରରେ ଫିଙ୍ଗି ଦେଇଥିଲେ । ସେମାନେ ଏବେ ପାଲେଷ୍ଟାଇନ କୂଳବର୍ତ୍ତୀ ହାଇଫାରେ ଏକ ନୂତନ ବଡ଼ ପୋତାଶ୍ରୟ ତିଆରି କରୁଛନ୍ତି । ସମୁଦ୍ର ତଳୁ ମାଟି ଖୋଳିଲାବେଳେ ସେହି ବୋତଲଗୁଡ଼ିକ ବାହାରୁଛି । କେବେ କେବେ କେହି ବୋକା ଲୋକ ସେ ବୋତଲ ଖୋଲିଦେଉଛନ୍ତି ଓ ବନ୍ଦୀ ବେତାଳ ସବୁ ଖସି ଯାଉଛନ୍ତି । ସେମାନେ ଅବଶ୍ୟ ବହୁତ ରାଗିକରି ଅଛନ୍ତି । ତୁମକୁ ଯଦି ତିନି ହଜାର ବର୍ଷ ଧରି କଡ଼ ଲେଉଟାଇ ହେଉନଥିବା ଭଳି ଗୋଟିଏ ଛୋଟ କୋଠରୀ ଭିତରେ ବନ୍ଦ କରିଦିଆଯିବ ତେବେ ତୁମେ ମଧ୍ୟ ସେଭଳି ରାଗିବ । ସୋଲୋମନ ସେମାନଙ୍କୁ ଟିକିଏ ବଡ଼ ବୋତଲରେ ବନ୍ଦକରି ରଖିଥିଲେ ଭଲ ହୋଇଥା'ନ୍ତା । ଏବେ ସେ ବେତାଳମାନେ ବାହାରକୁ ଆସି ଉଡ଼ି ବୁଲୁଛନ୍ତି । କିନ୍ତୁ ଏବେକାର ପବନରେ ଆଉ ଆଗଭଳି ନାହିଁ । ରେଡ଼ିଓ ତରଙ୍ଗ ସବୁ ବେତାଳମାନଙ୍କ ଦେହରେ ଭେଦିକରି ଚାଲିଯାଏ, ଫଳରେ ତାଙ୍କର ପେଟରେ ପୀଡ଼ା ହୁଏ । ତେଣୁ ସେମାନେ ଆହୁରି ବେଶୀ ରାଗିଯା'ନ୍ତି । ପ୍ରଥମେ ଯେତେବେଳେ ବେତାର ପ୍ରସାରଣ ଆରମ୍ଭ ହେଲା, ବିଚରା ଅବ୍‌ଦୁଲ ମକ୍କର ମଧ୍ୟ ବଡ଼ ହଇରାଣ ହେଉଥିଲା । ତେଣୁ ମୁଁ ଜଣେ ପଦାର୍ଥ ବିଜ୍ଞାନୀ ବନ୍ଧୁଙ୍କୁ କହି ତାପାଇଁ ଗୋଟିଏ

ସୁରକ୍ଷା ଯନ୍ତ୍ର ତିଆରି କରାଇଲି । କିନ୍ତୁ ସେ ଯେତେବେଳେ ଖୁବ୍ ଜୋରରେ ଉଡ଼େ ତଳେଥିବା ରେଡ଼ିଓଗୁଡ଼ିକ ଚଡ଼ ଚଡ଼ ହୁଏ । ଲୋକମାନେ ଏହାକୁ ବାୟୁମଣ୍ଡଳରେ ବିଦ୍ୟୁତ କ୍ଷତ୍ ବୋଲି କୁହନ୍ତି ।

"ସେହି ବେତାଳମାନେ ବେଳେବେଳେ ବହୁତ ଚିଡ଼ିଯାଇ ଆମ ଭଳି ନିରୀହ ଯାତ୍ରୀମାନଙ୍କୁ ଆକ୍ରମଣ କରନ୍ତି । ଅବଶ୍ୟ ସେମାନେ ୟୁରୋପର ବେଶୀ ପାଖକୁ ଆସିବାକୁ ସାହସ କରନ୍ତି ନାହିଁ, କାରଣ ସେଠାର ବହୁତ ରେଡ଼ିଓ ଅଛି । ତେବେ ଏହି କବଚ ଆପଣଙ୍କୁ ରକ୍ଷା କରିପାରିବ । ଏହା ଉପରେ କୋରାନର ଶେଷ ଦୁଇଟି ଅଧ୍ୟାୟ ସୁରାତ୍ ଆଲ ମୁୱିଧେତାନୀ ଲେଖାଯାଇଛି । ଆପଣ କୌଣସି ବେତାଳକୁ ଦେଖିଲେ ତାହା ଆଡ଼କୁ ଯାଦୁବାଡ଼ି ଦେଖାଇଦେବେ ଓ ସେ ଲେଖାକୁ ପଢ଼ିଦେବେ । ହାୟ, ଆପଣଙ୍କୁ ତାହା ଜଣାନାହିଁ? ଆପଣ କେଉଁ ସ୍କୁଲରେ ପଢ଼ିଥିଲେ? ମୋର ପେଶାରେ ଆମକୁ ଅନ୍ତତଃ ଆଠଟି ଧର୍ମ ମାନିବାକୁ ପଡ଼େ । ତାହେଲେ ବିଭିନ୍ନ ପ୍ରକାରର ବେତାଳଙ୍କୁ ଜବତ କରିବାର ବାଟ ଜାଣିହେବ । କିନ୍ତୁ ଅଧିକାଂଶ ଲୋକ କେବଳ ଗୋଟିଏ ଧର୍ମ ମାନନ୍ତି ବା ଆଦୌ କୌଣସି ଧର୍ମ ମାନନ୍ତିନାହିଁ । ମୁଁ ଜଣେ ଭଲ ହିନ୍ଦୁ ହୋଇନଥିଲେ ରାକ୍ଷସମାନଙ୍କୁ ଖୁବ୍ ଡରୁଥା'ନ୍ତି । ସେମିତି, ଟାଓ ଧର୍ମୀ ହୋଇନଥିଲେ ଚୀନ ଯାଇଥିବାବେଳେ ମହାନ ସବୁଜ ମଣି ବେଙ୍ଗ ଆସି ମୋ ଛାତି ଉପରେ ଡିଅନ୍ତା । ମହାୟଣ ବୌଦ୍ଧ ଧର୍ମାବଲମ୍ବୀ ହୋଇନଥିଲେ ତିବ୍ବତକୁ ଆପଣ ଯିବାକଥା ଭାବିବେନାହିଁ ! ଆପଣଙ୍କ ଟୋପି ପରି କଳା କଳା ଅସୁର ସେଠାରେ ସାଲୁବାଲୁ ହେଉଥା'ନ୍ତି । ସେମାନଙ୍କର ସାର୍କ ପରି ଦାନ୍ତ ଓ ଇଗଲ ପରି ପଞ୍ଝା ଥାଏ । ଇଂଲଣ୍ଡର ରାଜାମାନଙ୍କର ରାଜୁତିକାଳ ସବୁ କହିପାରିଲେ ବି ଚଳିବ । ଏଗ୍‌ବର୍ଟଙ୍କୁ ବାଦଦେଇ ଦିଗ୍‌ବିଜୟୀ ଉଇଲିୟମଙ୍କଠାରୁ ମଧ୍ୟ ଆପଣ ଆରମ୍ଭ କରିପାରିବେ ।"

ଆମେ ସେତେବେଳକୁ ଭୂମଧ୍ୟ ସାଗରର ଡାହାଣ-ତଳ କୋଣରେ ପହଞ୍ଚି ଯାଇଥିଲୁ । ଅନେକ ଜାହାଜ ସୁଏଜ୍ କେନାଲକୁ ପଶୁଥିବା ବା ସେଠାରୁ ବାହାରୁଥିବା କଥା ଦେଖିହେଉଥାଏ । ସୁଏଜକୁ ଆମେ ଡାହାଣ ପଟେ ଛାଡ଼ି ସିନାଇ ପର୍ବତ ଉପରେ ଚାଲିଗଲୁ । ସିନାଇ ପର୍ବତରେ କିଛି ଗଛଲତା ନ ଥିଲା କି ତାହା ଏତେ ଉଚ୍ଚ ମଧ୍ୟ ନ ଥିଲା । ଖରା ଏବେ ଖୁବ୍ ଟାଣ ହୋଇଯାଇଥିଲା । କବଚ, ଲାଇଫବେଲ୍ଟ, ଆକାଶଛତା ଆଦି ଲାଗିଥିବାରୁ ମୁଁ ମୋର କୋଟକୁ ଓହ୍ଲାଇ ପାରୁନଥିଲି । କିନ୍ତୁ ଲିକୀ ତାଙ୍କ କୁହୁକବାଡ଼ି ହଲାଇ ମୋର ଗରମ ଜାମାପଟାକୁ ରେଶମରେ ପରିଣତ କରିଦେଲେ । ଫଳରେ ମୁଁ ଗରମରୁ ବଞ୍ଚିଗଲି । ଅଳ୍ପ ସମୟପରେ ଆମେ ଆରବ ଉପରେ ଉଡ଼ିଲୁ । ପ୍ରଥମେ କିଛି ସବୁଜ ଅଞ୍ଚଳ ଦେଖାଗଲା, ପରେ କିନ୍ତୁ କେବଳ ଗଦା ଗଦା ଲାଲ ବାଲି

ଛଡ଼ା ପ୍ରାୟ ଆଉ କିଛି ଦେଖାଗଲାନାହିଁ । କେଉଁଠି ଠାଏଠାଏ ଗୋଟିଏ ଗୋଟିଏ କୂଅ ଚାରିପଟେ ଅଳ୍ପ ତାଳଗଛ ଦେଖାଗଲା ।

ତା'ପରେ ଆମ ଆଗରେ ପଡ଼ିଲା ଏକ ଧୂସର ଅଞ୍ଚଳ । ତାହା ତଳେ ମରୁଭୂମି ଦେଖାଯାଉନଥିଲା । ଶ୍ରୀ ଲିକୀ କହିଲେ, "ଧୂଳିଝଡ଼" । ଆମେ ତା' ଉପରେ ପହଞ୍ଚିଲା ବେଳକୁ ହଠାତ ଆମ ଆଗରେ ଖଣ୍ଡେ କଳା ବାଦଲ ଭଳି ଜିନିଷ ଦେଖାଦେଲା । ତାହା କିନ୍ତୁ ଥିଲା ଏକ ବେତାଳ । ଆମ ଆଖି ଆଗରେ ସେ ଗୋଟିଏ ମୁହଁର ରୂପ ନେଲା ଓ ସେଥିରେ ଅଧ ମାଇଲ ଚଉଡ଼ାର ଗୋଟିଏ ବିରାଟ ପାଟି ଦେଖାଗଲା । ଶ୍ରୀ ଲିକୀ କେବଳ ତାଙ୍କ ଯାଦୁବାଡ଼ି ଦେଖାଇ ଦେଖାଇଦେବାରୁ ବେତାଳଟି ତଳକୁ ଚାଲିଗଲା ।

ବେତାଳକୁ ପାର ହୋଇଯିବା ପରେ ଲିକୀ କହିଲେ, "ପଛକୁ ଦେଖୁଥାଅ" । ଆଉ ସତକୁ ସତ କିଛି ସମୟ ପରେ ସେ ବେତାଳ ପୁଣି ଉପରକୁ ଉଠିଲା । ଲିକୀ କହିଲେ, "ମୁଁ ବହୁତ ବ୍ୟସ୍ତ ଅଛି" । ଆଗପଟେ ସେ କ'ଣ କରୁଛନ୍ତି ମୁହଁ ବୁଲାଇ ତାହା ଦେଖିବାକୁ ସାହସ କରୁନଥିଲି । ହଠାତ ମୋତେ ଲାଗିଲା ଗାଲିଚାଟି ନିଜ ରାସ୍ତାରୁ ହଟି ଯାଉଥିଲା । ଏଣେ ପଛରୁ ଖଣ୍ଡେ ବିରାଟ କଳା ହାଣ୍ଡିଆ ମେଘ ପରି ରୂପରେ ବେତାଳଟି ଆମ ଆଡ଼କୁ ମାଡ଼ି ଆସୁଥିଲା । ତା'ର ଦେହ ଭିତରର ଜଳନ୍ତା ନିଆଁ ଭଳି ଦୃଶ୍ୟ ଖୋଲା ପାଟି ବାଟରେ ଦିଶୁଥିଲା । ବିଜୁଳୀ ଝଲକାଇ ଓ ଭୟଙ୍କର ଗର୍ଜନ କରି ମାଡ଼ି ଆସୁଥିବା ଗୋଟିଏ ବିରାଟ ବଳଦ ପରି ସେ ଲାଗୁଥିଲା । ବେତାଳଟି ନିଶ୍ଚୟ ବିକଟାଳ ଗର୍ଜନ କରୁଥିଲା, କିନ୍ତୁ ଆମ ଗାଲିଚାଟି ଶବ୍ଦଠାରୁ ବେଶ୍ ଅଧିକ ବେଗରେ ଯାଉଥିବାରୁ ତାହା ଆମକୁ ଶୁଣାଯାଉନଥିଲା ।

ମୁଁ କୁହୁକବାଡ଼ିଟିକୁ ତା' ଆଡ଼କୁ ଦେଖାଇଲି ଓ ଦିଗ୍‌ବିଜୟୀ ଉଇଲିୟମଙ୍କଠାରୁ ରାଜାଙ୍କ ନାଁ ସବୁ ମନେ ପକାଇବା ଆରମ୍ଭ କଲି । ବେତାଳ ହଠାତ ଅଶ୍ୱସ୍ତିକର ବୋଧ କଲା ଓ ତା'ର ମୁହଁଟି ବେଶ୍ ଛୋଟ ହୋଇ ଗୋଟିଏ ଘର ଆକାରର ହୋଇଗଲା । ଏବେ ତା'ର ଦେହକୁ ମଧ୍ୟ ମୁଁ ଦେଖିପାରିଲି । ତାହାର ରଙ୍ଗ ଥିଲା ଅତି କଦର୍ଯ୍ୟ ଶାଗୁଆ-ପାଉଁଶିଆ । ତଥାପି ସେ ଆମ ଆଡ଼କୁ ମାଡ଼ି ଆସୁଥାଏ । ମଝିରେ ମୋର ତୃତୀୟ ହେନେରୀଙ୍କ ରାଜୁତିକାଳଟି ଠିକ ମନେ ପଡ଼ିଲା ନାହିଁ । ମୁଁ ଟିକିଏ ଦୋ ଦୋ ପାଞ୍ଚ ହେବାରୁ ତା'ର ମୁହଁ ପୁଣି ଫୁଲିବାରେ ଲାଗିଲା । କିନ୍ତୁ ମୁଁ ତାହ ପୁଣି ଠିକ କରିନେଲାରୁ ତା'ର ମୁହଁ ପୁଣି ଛୋଟ ହୋଇଗଲା । ସେ ଆମଠାରୁ ୧୦୦ ଗଜ ଖଣ୍ଡେ ଛାଡ଼ିକରି ରହୁଥାଏ, ଆଉ ପାଖକୁ ଆସିବାକୁ ସାହାସ କରୁନଥାଏ । ସେ ଅନେକ ଭୟଙ୍କର ମୁଖଭଙ୍ଗୀ କରୁଥିଲା ଓ ଆମ ଆଡ଼କୁ ନିଶ୍ୱାସର ନିଆଁ ହୁଳା ଛାଡୁଥିଲା । ମାତ୍ର ସେ ଅତି ଜୋର୍‌ରେ ଆକାଶରେ ଉଡୁଥିବାରୁ ସେଇ ନିଆଁ ହୁଳା ତା ମୁହଁକୁ ପଡୁଥିଲା ।

ସେ ସେକେଣ୍ଡକୁ ତିନି ମାଇଲ ବେଗରେ ଉଡୁଥିଲା ବୋଲି ଭାବୁଛି । ରାଜାମାନଙ୍କ ନାଁ ଦୋହରାଇବି କି ନାହିଁ ତାହା ମୁଁ ଭାବୁଥିଲି । ଏତିକିବେଳେ ଲିକୀ ଦୁଇ ହାତରେ ଦୁଇଟି ଯାଦୁବାଡ଼ି ଧରି ବୁଲି ପଡ଼ିଲେ ଓ କହିଲେ, "ଆଗରୁ ସମସ୍ତଙ୍କୁ ମୁଁ ସଫା କରିଦେଲିଣି । ଅବଦୁଲ ମକ୍କର ସେପଟେ ଆଖି ରଖିଛି ।" ଏକଥା କହିଲା ମାତ୍ରେ ତାଙ୍କ ଯାଦୁବଡ଼ିରୁ ବାଇଗଣୀ ରଙ୍ଗର ଗୋଟିଏ ଆଲୁଅ ଫାଶ ବାହାରିଲା ଓ ବେତାଳର ବେକକୁ ଧରିଲା । ବନିଶୀରେ ବଡ଼ ମାଛଟିଏ ଧରିଲା ଭଳି ଲିକୀ ଗାଲିଚାର ଫାଶରେ ଗୋଡ଼ଛନ୍ଦି ତାକୁ ଘୋଷାଡ଼ିବାରେ ଲାଗିଲେ । ଅନ୍ୟ ଯାଦୁବାଡ଼ିଟି ସେ ବେତାଳ ଆଡ଼କୁ ଦେଖାଇଲେ ଓ ବେତାଳ ଖୁବ୍ ଛଟପଟ ହେଲା ଓ ଛୋଟ ହୋଇଗଲା । ତା'ର ଆକାର ପ୍ରାୟ ୨୦ଫୁଟକୁ ଖସିଗଲାରୁ ଶ୍ରୀ ଲିକୀ କହିଲେ, "ପମ୍ପେ, ତା'ର ନାକକୁ କାମୁଡ଼ି ଛିଡ଼ାଇ ଦିଅ" । ପମ୍ପେ ଉହ୍ଲେଇରୁ ଓହ୍ଲାଇ ବେତାଳର ମୁହଁ ଉପରେ ଚାରି ଗୋଡ଼ ଥୋଇ ବସିଲା ଓ ତା'ର ନାକଟିକୁ କାମୁଡ଼ି ଛିଣ୍ଡାଇଦେଲା । ତା' ପରେ ସେ ଓଠ ଚାଟି ଚାଟି, ଲାଙ୍ଗୁଡ଼ ହଲାଇ ଉଡ଼ିଆସିଲା ଓ ଆଗ ପରି ନିଆଁ ଉପରେ ବସି ପଡ଼ିଲା ।

ଲିକୀ ବେତାଳକୁ ଛାଡ଼ିଦେଲେ । ମାତ୍ର ସେ ଆଉ ଉଡ଼ିପାରିଲା ନାହିଁ ଓ ଆଖିପିଛୁଳାକେ କେତେ ପଛରେ ରହିଗଲା । "ଯାତାୟାତରେ ବାଧାଦେଲେ ସେ ଏପରି ଶିକ୍ଷାପାଇବ । ସେ କହିଲେ, "ତା'ଭଳି ଆଉ ଦୁଇଟିଙ୍କୁ ମୁଁ ଆଗପଟୁ ସାବାଡ଼ କରିଥିଲି । ଏଇ ଦେଖ ଆସୁଛି ଚତୁର୍ଥ ବେତାଳ ।" ବାଁ ପଟକୁ ଦେଖିଲି, ଲମ୍ବା ଦାନ୍ତଥିବା ଗୋଟିଏ ବିରାଟକାୟ ବାଇଗଣୀ ରଙ୍ଗର ମୁହଁ । କିନ୍ତୁ ହଠାତ ସେଇଟି କଷ୍ଟରେ ଚିତ୍କାର କରି ଯନ୍ତ୍ରଣାରେ ଭିଡ଼ିମୋଡ଼ିହୋଇ ଉଭେଇ ଗଲା । ଲିକୀ ଖୁସିରେ କହିଲେ, "ଓହୋ ! ଏବେ ସେମାନେ ଆଉ ଆମ ଯାତ୍ରାରେ ବାଧା ଦେବାକୁ ସାହସ କରିବେ ନାହିଁ । ତାକୁ କାବୁ କରିଥିବା ଜିନିଷଟି ହେଉଛି ସିମେଣ୍ଟ ଦରଦାମ ଖବର ନେଇ ରଗ୍‌ବିରୁ ଅଷ୍ଟ୍ରେଲିଆକୁ ଯାଉଥିବା ରେଡ଼ିଓ ତରଙ୍ଗ । ସେହି ତରଙ୍ଗ ବାଇଗଣୀମୁହାଁ ବେତାଳର ପେଟରେ ପଶି ତା ଦେହରୁ ସବୁ ପବନ ବାହାର କରିଦେଲା । ଆମେ ଏବେ ସେ ତରଙ୍ଗର ମୁଖ୍ୟ ସ୍ରୋତ ବାହାରେ । ତାହା ପାରସ୍ୟ ଉପର ଦେଇ ଯାଏ ଓ ସେ ଅଞ୍ଚଳକୁ ବେତାଳଙ୍କ ଦାଉରୁ ମୁକ୍ତ ରଖେ । କିନ୍ତୁ ଏଠାରେ ମଧ୍ୟ ତାହାର ପ୍ରଭାବ ବେତାଳଙ୍କ ପାଇଁ ଢେର । ତେଣୁ ଆପଣ ଏବେ ଯାଦୁବାଡ଼ିକୁ ରଖିଦେଇ ପାରିବେ । ଆଶା କରୁଛି ଏସବୁ କାଣ୍ଡ ଆପଣଙ୍କୁ ବେଶୀ ଅଡୁଆ ଲାଗିନଥିବ । ମାସକୁ ଅନ୍ତତଃ ଥରେ ଏଭଳି ନ ହେଲେ ଜୀବନଟା ନୀରସ ହୋଇପଡ଼ନ୍ତା ।"

"ମାନିବାକୁ ହେବ ଯେ ମୁଁ ବେଶ୍ ଡରିଯାଇଥିଲି । କାରଣ ଆଗରୁ ମୁଁ ଆମ ବନ୍ଧୁ ଅବ୍‌ଦୁଲଙ୍କ ଛଡ଼ା ଆଉ କେଉଁ ବେତାଳକୁ ଦେଖି ନ ଥିଲି", ମୁଁ କହିଲି ।

ଅବ୍ଦୁଲ ମକ୍କର କହିଲେ, "ଆପଣଙ୍କ ବନ୍ଧୁତ୍ୱର ସ୍ୱୀକୃତି ଆମ ପାଇଁ ଅମୂଲ୍ୟ ।" ମୁଁ ମଧ୍ୟ ସେମାନଙ୍କୁ କହିଲି, "ଆପଣମାନଙ୍କ ଭଳି ଦକ୍ଷ ଆତ୍ମାଙ୍କ ସହିତ ମୋର ମିତ୍ରତା ସମ୍ରାଟ ସୋଲୋମନଙ୍କ ସୁବର୍ଣ୍ଣ ତୁଳନାରେ ମଧ୍ୟ ଅଧିକ ମହତ୍ୱପୂର୍ଣ୍ଣ ।" ଏହିଭଳି କଥା କହିବା ବିଶେଷ କଷ୍ଟ ନ ଥିଲା । ଲିଙ୍କୀ କହିଲେ, "ମୁଁ ଖୁସି ଯେ ଆପଣ ଅଲୌକିକ ଜୀବଙ୍କ ସହିତ ସୌଜନ୍ୟପୂର୍ଣ୍ଣ କଥାବାର୍ତ୍ତା କରିବାର କଳା ଜାଣିଗଲେଣି । ଅବଶ୍ୟ ଆମେ ବିଶେଷ ବିପଦରେ ପଡ଼ିନଥିଲେ, ତଥାପି ନୂଆକରି ଯାଦୁ ଶିଖୁଥିବା ଲୋକଙ୍କପାଇଁ ତାହା ବେଶ୍ ଅସୁବିଧା କରିଥା'ନ୍ତା । ବେତାଳମାନଙ୍କୁ ଏଡ଼ାଇବାକୁ ଯାଇ ଆମେ ଆମ ରାସ୍ତାରୁ ବେଶ୍ ଦୂରେଇ ଯାଇଛେ । ପାରସ୍ୟ ଉପସାଗର ଏବେ ତଳେ ଦେଖାଯାଉଛି । ମୁଁ ଭାବୁଛି ମାଣ୍ଟୁ ବଦଳରେ ଆମେ ଉତ୍ତର ଭାରତର କୌଣସି ସ୍ଥାନକୁ ଯିବା । ଦିଲ୍ଲୀ କିପରି ହେବ ?

ପାରସ୍ୟ ଓ ବେଲୁଚିସ୍ଥାନର ଦକ୍ଷିଣ ଉପକୂଳ ଉପରେ ମିନିଟିଏ ଦୁଇମିନିଟ ଉଡ଼ିଲାବେଳେ ବାଗ୍‌ଦାଦ୍ ଓ ଭାରତ ରାସ୍ତାରେ କେତୋଟି ପାଣି ଜାହାଜ ଓ ଉଡ଼ାଜାହାଜ ଦେଖିଲି । ଅବଶ୍ୟ ସେସବୁ ଆମର ବହୁତ ତଳେ ଥିଲା ଏବଂ ଆମେ ବହୁତ ଜୋରରେ ଉଡୁଥିବାରୁ ସେଗୁଡ଼ିକ ସ୍ଥିର ଦେଖାଯାଉଥିଲା । ଆମେ ସିନ୍ଧୁନଦୀର ମୁହାଣ ଓ କରାଚୀର ଉପରେ ଉଡ଼ିଗଲୁ ଓ ଗୋଟିଏ ମରୁଭୂମି ଉପର ଦେଇ ଭୂଭାଗକୁ ଆସିଲୁ । ମୁଁ ଅନୁଭବ କଲି ଗାଲିଚାଟି ତଳକୁ ଖସୁଚି ଏବଂ ଦେଖିଲି ଆମ ଆଗରେ ଏକ ବିରାଟ ନଦୀ ଯାହା ଯମୁନା ବୋଲି ମୁଁ ଅନୁମାନ କଲି । ପାଖରେ ଗୋଟିଏ ନଗରୀ ଥିଲା ଯେଉଁଠି ଗୋଟିଏ ପ୍ରକାଣ୍ଡ ଲାଲ ଗମ୍ବୁଜକୁ ଘେରିକରି ଚାରୋଟି ଧଳା ମିନାର ଦେଖାଯାଉଥିଲେ । ସେ ନଗରୀର ବାହାରେ ଉଦ୍ୟାନରେ ଘେରିରହିଥିବା ଆଉ କେତେ ଲାଲ ଓ ଧଳା ପ୍ରାସାଦ ଦେଖାଯାଉଥିଲା । ଆଉ କିଛି ଦୂରରେ ଥିଲା ଏକ ମସ୍ତବଡ଼ ପ୍ରସ୍ତର ମୀନାର ଓ ଏକ ଅତି ସୁନ୍ଦର ନୀଳ ଗମ୍ବୁଜ ।

ଗାଲିଚା ଏବେ ତଳକୁ ଖସିଲା ଓ ସେଥିଯୋଗୁ ମତେ ବଡ଼ ଅଖାଡୁଆ ଲାଗିଲା । ସେ ଅନୁଭୂତି କିଛିଦୂର ଲିଫ୍‌ଟରେ ତଳକୁ ଖସିଲେ ସେମିତି ଲାଗେ, ମାତ୍ର ଖୁବ୍ ଗଭୀର ଖଣି ତଳକୁ ଖସିଲା ଭଳି । ଲାଗେ ଯେପରି ତୁମ ପେଟର ସବୁ ଜିନିଷ ଉପରକୁ ଉଠି ଆସୁଛି ! ଖଣି ତଳକୁ ଗଲାବେଳେ ପ୍ରାୟ ଗୋଟିଏ ସେକେଣ୍ଡ ପାଇଁ ଏପରି ଲାଗିଥାଏ । କିନ୍ତୁ ଏଥର ଅଧିକ ସମୟ ପାଇଁ ଏମିତି ଲାଗିଲା । ପୁଣି ଆମେ ଉପରକୁ ଉଠୁଥିବା ଭଳି ଲାଗିଲା, କିନ୍ତୁ ସେ ଅନୁଭୂତି ଆସିଥିଲା ପ୍ରକୃତରେ ଆମର ତଳକୁ ଖସିବାର ଗତି ଧିମେଇ ଯାଇଥିବା ଯୋଗୁ । ମୁଁ ଗାଲିଚାର ଧାରକୁ ଯାଇ ତଳକୁ ଅନାଇଲି । ତଳେ ରାସ୍ତାରେ ବହୁତ ଲୋକ ଦେଖାଯାଉଥିଲେ, କିନ୍ତୁ କେହି ଆମ ଆଡ଼େ ନଜର ଦେଉନଥିଲେ । ଲିଙ୍କୀ କହିଲେ, "ସେମାନେ ଆମକୁ ଦେଖିପାରିବେ ନାହିଁ । ଉଡୁଥିବାବେଳେ ତଳପଟରୁ

ଗାଲିଚାକୁ ଦେଖିହୁଏନାହିଁ । ନଚେତ ବେତାଳମାନେ ତଳୁ ହିଁ ଆମ ଉପରେ ଆକ୍ରମଣ କରିଥା'ନ୍ତେ । ଅନେକ ଜୀବ ତାଙ୍କର ପେଟତଳକୁ ଧଳା କରି ଅଦୃଶ୍ୟ ହେବାକୁ ଚେଷ୍ଟା କରନ୍ତି । ଅଧିକାଂଶ ପ୍ରକାରର ମାଛ ଏଭଳି କରନ୍ତି । ତେବେ ତୁମେ ଯାଦୁ ବିନା ସତରେ ଅଦୃଶ୍ୟ ହୋଇପାରିବ ନାହିଁ । ଏବେ ଆମେ ମୋର ସାଙ୍ଗ ଚନ୍ଦ୍ରଜ୍ୟୋତିଷଙ୍କ ପାଖକୁ ଯିବା । ସେ ମଧ୍ୟ ଜଣେ ଯାଦୁକର ଏବଂ ଖୁବ୍ ଭଲ ଯାଦୁକର ଜଣେ ।

କୁହୁକ ଗାଲିଚାଟି ଗୋଟିଏ ସୁନ୍ଦର ଛୋଟ ବଗିଚାରେ ଓହ୍ଲାଇଲା । ସେଥିରେ ଝରଣା ଓ କମଳା ଗଛ ଭର୍ତ୍ତି ହୋଇଥିଲା । ତା ଚାରିପଟେ ଧଳା ଶଙ୍ଖ ମଲମଲ ପଥରର ପ୍ରାଚୀର ଠିଆ ହୋଇଥିଲା । ଆମେ ଗାଲିଚାରୁ ଓହ୍ଲାଇଲୁ । ଅବ୍ଦୁଲ ମଙ୍କର ପମ୍ପେକୁ ତା'ର ଉହ୍ଲେଇ ସହିତ ଉଠାଇଆଣିଲା ଏବଂ ଜିନିଷପତ୍ର ସବୁ ମଧ୍ୟ ଓହ୍ଲାଇଦେଲା । ଗାଲିଚାଟି ଆପେ ଆପେ ଗୁଡ଼ାଇ ହୋଇଗଲା ଓ ଘରର ଗୋଟିଏ କୋଣରେ ଠିଆ ହୋଇଗଲା । ଦୁଇ ଜଣ ଅତି ସୁନ୍ଦରୀ ଭଦ୍ର ମହିଳା ଘରୁ ବାହାରି ଆସିଲେ - ଜଣଙ୍କର ଲମ୍ବାଳିଆ ମୁହଁଟି ବାଦାମୀ ରଙ୍ଗର ଥିଲା । ଅନ୍ୟ ଜଣଙ୍କର ମୁହଁ ଥିଲା ଫିକା ହଳଦିଆ ରଙ୍ଗ ଓ ତାଙ୍କର ଆଖି ଦୁଇଟି ଢଳି ରହିଥିଲା । ତାଙ୍କ ନାକରେ ମାଣିକଲଗା ସୁନା ତାରକସି କାମର ନୁତୁକ ଝୁଲୁଥିଲା ।

ଲିକୀ କହିଲେ, "ଏମାନେ ହେଲେ ଶ୍ରୀମତୀ ସୀତାବାଇ ଚନ୍ଦ୍ର ଜ୍ୟୋତିଷ ଓ ଶ୍ରୀମତୀ ରାଧିକା ଚନ୍ଦ୍ରଜ୍ୟୋତିଷ ।" ଲିକୀ ସେମାନଙ୍କ ସହିତ ଉର୍ଦ୍ଦୁରେ କଥା ହେବାକୁ ଆରମ୍ଭ କଲେ । ସେ ଜୋରରେ କହୁଥିବାରୁ ମୁଁ ତାହା ବୁଝିବା ପ୍ରଥମେ କଷ୍ଟକର ହେଲା । ତଥାପି ମୁଁ ବୁଝିପାରିଲି ଯେ ଶ୍ରୀଯୁକ୍ତ ଚନ୍ଦ୍ରଜ୍ୟୋତିଷ ଘରେ ନାହାନ୍ତି । ବର୍ତ୍ତମାନ ଜଣେ ତୃତୀୟ ଶ୍ରୀମତି ଚନ୍ଦ୍ରଜ୍ୟୋତିଷ ଆସି ପହଞ୍ଚିଲେ । କେତେକ ଭାରତୀୟଙ୍କର ଅନେକ ଜଣ ସ୍ତ୍ରୀ ଥା'ନ୍ତି । ତୃତୀୟ ଶ୍ରୀମତିଙ୍କ ମୁହଁ ବେଶ୍ ଫିକା ଥିଲା ଏବଂ ତାଙ୍କର ଲମ୍ବା ଓ ଗୋଜିଆ କାନରୁ ମୁଁ ଜାଣିଲି ଯେ ସେ ଜଣେ ମହିଳା ବେତାଳ । ମୋ ଦେଖିବାରେ ସେ ଥିଲେ ପ୍ରଥମ ମହିଳା ବେତାଳ । ଗରମରେ ଲାଲ ଦିଶୁଥିବା ପମ୍ପେକୁ ସେ ଧରିଲେ ଓ କୋଳରେ ବସାଇଲେ । ତାକୁ ସେ କିଛି ଗନ୍ଧକ ଖଣ୍ଡ ଓ ଅନ୍ୟ ଅତି ଗରମ ଖାଦ୍ୟ ଦେଖାଇ ଦୁଇ ଗୋଡ଼ରେ ଛିଡ଼ା କରାଇଲେ । ମୁଁ ଡ୍ରାଗନ ବିଷୟରେ ବେଶୀ ଜାଣିନଥିବାରୁ ଅନ୍ୟ ଖାଦ୍ୟଗୁଡ଼ିକ କ'ଣ ତାହା ଚିହ୍ନିପାରିଲିନାହିଁ । ଲିକୀ ତାଙ୍କୁ ଏହା ବନ୍ଦ କରିବାକୁ କହିଲେ । "ଡ୍ରାଗନକୁ ବେଶୀ ମୋଟା କରିବାକୁ ଚାହେଁ ନାହିଁ", ମୋତେ ସେ କହିଲେ, "ଡ୍ରାଗନମାନେ ଡାଚ୍‌ଶଣ୍ଡ କୁକୁରଭଳି ପତଳା ହେବା ଉଚିତ । ଅବଶ୍ୟ ସେମାନେ ବିଭିନ୍ନ ଜାତିର ଅଛନ୍ତି । ୟୁରୋପରେ ଡ୍ରାଗନ ଏତେ ପତଳା ନୁହନ୍ତି । କିନ୍ତୁ ଭଲ ଜାତିଆ ଚୀନା ଡ୍ରାଗନ ଦେହକୁ ବଙ୍କାଇ ତୁମେ ଚାରିଟି ଗଣ୍ଠି ପକାଇପାରିବ ।



ଠିକ ଯେପରି ଭଲ ଜାତିର ଜୀରାଫର ବେକରେ ଗୋଟିଏ ଗଣ୍ଠି ପଡ଼ିପାରିବ । ତୁମେ ଯଦି ଖେଳ ଦେଖାଇବାପାଇଁ ଜୀରାଫ ପୋଷିବାକୁ ଚାହଁ, ତେବେ ମନେରଖ ଯେ ତାଙ୍କ ବେକରେ ଗଣ୍ଠି ପକାଇ ହେଉନଥିଲେ ତା'ର ମୂଲ୍ୟ କିଛି ନାହିଁ ।"

"ଅବଶ୍ୟ ମୁଁ ଦେଖିଥିବା ଏକମାତ୍ର କାମିକା ଜିରାଫଟିର ବେକ ବହୁତ ମୋଟା ଥିଲା । ଓସ୍‌ୱାଲ୍‌ଡ୍‌ଓ୍ୱିସଲ୍‌ର ଟମ୍‌କିନ୍ ନାମକ ଜଣେ ଲୋକ ତାକୁ ପାଳିଥିଲେ । ଟମ୍‌କିନ୍ ଚୋରଙ୍କୁ ଏତେ ଡରୁଥିଲେ ଯେ ସେ ସିଡ଼ି ନ ଥିବା ଗୋଟିଏ ଘରେ ରହୁଥିଲେ । ଜିରାଫ ଉପରେ ଚଢ଼ି ସେ ଉପର ମହଲାକୁ ଉଠୁଥିଲେ ଓ ତଳକୁ ଓହ୍ଲାଉଥିଲେ । ଜିରାଫଟି କେବଳ ତାଙ୍କ କଥା ହିଁ ଶୁଣୁଥିଲା । ଯଦି ଚୋରମାନେ ଆଣି ସିଡ଼ି ରଖିବେ, ତେବେ ତାକୁ କେମିତି ତଳେ ପକାଇବାକୁ ହେବ, ଜିରାଫକୁ ସେ ଶିଖାଇ ଦେଇଥିଲେ । କିନ୍ତୁ ଜଣେ ଚୋର ଟମ୍‌କିନ୍‌ଙ୍କ ସ୍ୱରକୁ ରେକର୍ଡ କରି ଜିରାଫକୁ ଠକି ଦେଇଥିଲା ଓ ଜୀରାଫଟି ତାକୁ ଉପରକୁ ଚଢ଼ାଇଦେଇଥିଲା । ସେ ଟମ୍‌କିନ୍‌ଙ୍କର ସନ୍ଧ୍ୟା ପୋଷାକର ବୋତାମ ଓ ପୁରୁଣାକାଳିଆ ବଡ଼ ଘଡ଼ିଟିକୁ ଚୋରାଇ ନେଇଥିଲା । ସେତେବେଳେ, ଟମ୍‌କିନ୍ ନାୟିକା ମାର୍‌ଲିନ୍ ଡିଟ୍ରିଚ୍‌ଙ୍କ ସିନେମା ଦେଖିବାରେ ମଗ୍ନ ଥିଲେ । ବିଶ୍ୱାସ

କରନ୍ତୁ, ଚୋର ଧରିବା ପାଇଁ କିଛି ବି ଯାଦୁମନ୍ତ୍ରର ପାସଙ୍ଗରେ ପଡ଼ିବନାହିଁ । ମୋ ଘରେ ଚୋର ପଶିବାକୁ ଚେଷ୍ଟାକଲେ ମୁଁ ଖୁବ୍ ହସିବି, କିନ୍ତୁ ସେ ବିଚରା କାନ୍ଦିବ ।

"ଶ୍ରୀଯୁକ୍ତ ଚନ୍ଦ୍ରଜ୍ୟୋତିଷ ଜୁଙ୍ଗାରିଆକୁ ଯାଇଛନ୍ତି, ମାତ୍ର ୪୫ ମିନିଟ୍ ଭିତରେ ସେ ତାଙ୍କ ରାତ୍ରି ଭୋଜନ ଓ ଆମ ମଧ୍ୟାହ୍ନ ଭୋଜନ ପାଇଁ ଫେରିବେ । ଚାଲ ସହରରେ ଟିକେ ବୁଲାବୁଲି କରିବା । ଆହେ ଅବ୍‌ଦୁଲ ମଜ୍ଜର, ତୁମେ ରୁବାଲ୍ ଖାଲିରେ ଥିବା ତୁମ ଘରକୁ ଯାଇ ତୁମର ବୁଢ଼ୀ ମାଉସୀଙ୍କୁ ଦେଖିବା ପାଇଁ ମୋର ଅନୁମତି ରହିଛି । ବୁଢ଼ୀ ମାଉସୀଙ୍କ ପାଇଁ ମୁଁ ଶାନ୍ତି କାମନା କରୁଛି । କିନ୍ତୁ ଦୁଇ ଘଣ୍ଟା ଭିତରେ ନିଶ୍ଚୟ ଫେରିବ । ଏହା ଲେଖାଯାଇଛି ଯେ ଶୀଘ୍ର ଘରୁ ବାହାରି ପଡୁଥିବା ଇଗଲ ସାପ ଧରିଥାଏ । ମାତ୍ର ବିଳମ୍ବରେ ପହଞ୍ଚିବା ଅତିଥି ରୋଷେଇ ଖାଲି ହାଣ୍ଡି ଦେଖନ୍ତି । ଆମେ ଏବେ ଆସୁଛୁ, ଶ୍ରୀମତୀ ଗଣ! ପମ୍ପେକୁ ବେଶୀ ଖୁଆଇବ ନାହିଁ । ଆମେ ବାହାରି ଗୋଟିଏ ସରୁ ଗଳି ଭିତରେ ପଶୁ ପଶୁ ଶ୍ରୀ ଲିଙ୍କୀ କହିଲେ, "ଶ୍ରୀ ଚନ୍ଦ୍ରଜ୍ୟୋତିଷଙ୍କ ସ୍ତ୍ରୀମାନେ ଖୁବ୍ ସୁନ୍ଦରୀ ନୁହନ୍ତି କି ? ସେମାନଙ୍କର ଚିର ଯୌବନ ଓ ଭଲ ବ୍ୟବହାର ପାଇଁ ସେ ଦିନକୁ ଦୁଇ ତିନି ଘଣ୍ଟା ଜପ ତପ କରିବାରେ କଟାନ୍ତି । ସେ କହନ୍ତି ଯେ ତାହାର ମୂଲ୍ୟ ସେ ପାଆନ୍ତି, କିନ୍ତୁ ତାହା ବଡ଼ କଷ୍ଟ କାମ । ଅବଶ୍ୟ, ସୋଲୋମନ ଜଣେ ବଡ଼ ଯାଦୁକର ଥିଲେ ବି ଏହି କାମକୁ ଚଳାଇ ରଖିପାରିନଥିଲେ । ତାଙ୍କର ପୁଣି ତିନି ଶହ ସ୍ତ୍ରୀ ଥିଲେ, ଯାହା ଅତି ବେଶୀ ବୋଲି ମୁଁ ଭାବୁଛି ।

ମୁଁ ଦିଲ୍ଲୀ ବିଷୟରେ ତୁମଙ୍କୁ କିଛି କହୁନାହିଁ, କାରଣ ଭାରତ ବିଷୟରେ ବହିରୁ ତୁମେ ଏହା ଉପରେ ଅନେକ କଥା ଜାଣିପାରିବ । ମାତ୍ର ମୁଁ ଭାବୁଛି ବଡ଼ ମସ୍‌ଜିଦ ଓ ପୁରୁଣା କିଲା ଭାରି ସୁନ୍ଦର । ଲିଙ୍କୀ ଆଉ ଗୋଟିଏ କଥା ଜାଣିଥିଲେ, ଯାହା କୌଣସି ଗାଇଡ୍ ବହିରେ ମିଳିବ ନାହିଁ, ଯେ କିନାରା ବଜାରର ଉତ୍ତର ପଟରେ ଗୋଟିଏ ଛୋଟ ଦୋକାନରୁ ତୁମେ ଦୁନିଆର ସବୁଠୁଁ ସୁଆଦିଆ ମିଠା ଶସ୍ତାରେ ପାଇବ । ଆମେ ମିଠା କିଣିଲାବେଳେ ଗୋଟିଏ ଅତି ସୁନ୍ଦର ନାଲିଆଖିଆ ନେଉଳ ପାଖର ନାଳରୁ ମୂଷା ଧରୁଥିବାର ଦୃଶ୍ୟ ମୁଁ ଦେଖିଲି ।

ଆମେ ମଧ୍ୟାହ୍ନ ଭୋଜନ ପାଇଁ ଫେରିଲୁ ଓ ଖୁବ୍ ବଢ଼ିଆ ଖାଦ୍ୟ ଖାଇଲୁ । ଶ୍ରୀଯୁକ୍ତ ଚନ୍ଦ୍ରଜ୍ୟୋତିଷ ଫେରିଥିଲେ । ସେ ଜଣେ ମୋଟା ଓ ମଉଜିଆ ଲୋକ । ତାଙ୍କ ପଗଡ଼ିରେ ଗୋଟିଏ ବଡ଼ ରତ୍ନ ପଥର ଖଞ୍ଜା ଯାଇଥିଲା । ସେ ମଧ୍ୟ ଭଲ ଇଂରାଜୀ କହୁଥିଲେ । ମାତ୍ର ଷ୍ଟେସନକୁ *ଇସ୍‌ଟେସନ* ଓ ବକ୍ସକୁ *ବକସ୍* କହୁଥିଲେ । ସେ କହିଲେ, "ମୁଁ ଚାହିଁଲେ ମନ୍ତ୍ର କରି ରେଡ଼ିଓରେ କହୁଥିବା ଲୋକଙ୍କ ଭଳି ଇଂରେଜ କହିପାରନ୍ତି । କିନ୍ତୁ ଏଭଳି ସ୍ୱାଭାବିକ ଭାବରେ କହିଲେ ତାହା ବେଶୀ ମଜା ଶୁଣାଯାଏ । ଇଂରେଜ

ଲୋକମାନେ ମଧ୍ୟ ଉର୍ଦ୍ଦୁ କହିଲେ ମୋ ପରି ଭୁଲ କୁହନ୍ତି । ତେଣୁ ମୁଁ କହିଲେ ଅସୁବିଧା କ'ଣ? ଆମେ ମାଛ, ମସଲା ଦିଆ କୁକୁଡ଼ା ଓ ଭାତ ସୁନା ଥାଳିରେ ଖାଇଲୁ ଓ ମରକତ ମଣି ତିଆରି କପ୍‌ରୁ ମଦିରା ପିଇଲୁ । ଆମ୍ବ ଋତୁ ହୋଇନଥିଲେ ବି ଆମ୍ବ ଓ ମିଠା ଖାଇଲୁ । ଚନ୍ଦ୍ର ଜ୍ୟୋତିଷଙ୍କର ଜଣେ ପରିଚାରକ ଭୂଇଁରେ ଆମ୍ବ ଟାକୁଆଟିଏ ପୋତି ଟୋକେଇ ଘୋଡ଼ାଇଦେଲେ । ଟୋକେଇକୁ ସେ ଚାରିଥର ଟେକିବା ସମୟରେ ଆମେ ସେ ଗଛର ଅଙ୍କୁର, ଚାରା, ବୁଦା ଏବଂ ଫୁଲ ଓ ଫଳଧରା ଅବସ୍ଥା ଦେଖିପାରିଲୁ । ମୁଁ ଭାବୁଛି ଯେ ଲିକୀଙ୍କ ଆମ୍ବ ଫଳାଇବା ଧାରା ବେଶୀ ଭଲ ଥିଲା, କାରଣ ସେଥିରେ ଗଛଟି ବଢୁଥିବା ମୁଁ ଦେଖିପାରିଥିଲି । ଯେତେବେଳେ ସେ ଆକାଶକୁ ଗୋଟିଏ ଦଉଡ଼ି ଛାଟିଦେଲେ ଏବଂ ତା ଉପରେ ଚଢି କୁଆଡ଼େ ଉଭାନ ହୋଇଗଲେ, ତାହା ମୋତେ ବେଶୀ ମଜା ଲାଗିଲା ।

ଲିକୀ କହିଲେ, "ମୁଁ ଏହା ଏତେ ଭଲ କରିପାରେନାହିଁ ।" ଚନ୍ଦ୍ରଜ୍ୟୋତିଷ କହିଲେ, "ମୁଁ ଭାବୁଛି ଆପଣ ମନ୍ତ୍ର ଠିକ ଭାବରେ ଉଚ୍ଚାରଣ କରନ୍ତି ନାହିଁ । ସ୍ମୃତ ଶବ୍ଦଟି କହିବାବେଳେ ତୁମେ ଜିଭକୁ ପଛକୁ ବଙ୍କେଇ ପାଟିର ତାଳୁକୁ ଛୁଆଁଇ 'ର' ଉଚ୍ଚାରଣ କରିବା ଉଚିତ । ବହୁ ୟୁରୋପୀୟ ଯାଦୁକର ଏହି ଭୁଲ କରିଥା'ନ୍ତି ।" ଲିକୀ ଅନେକ



ଥର ଅଭ୍ୟାସ କଲେ ଓ ଶେଷରେ ଏହି ଉଚ୍ଚାରଣକୁ ସୁଧାରି ନେଲେ । ସେ କହିଲେ, "ଏଥିପାଇଁ ବହୁତ ଧନ୍ୟବାଦ । ହଁ, ମୋ ମୁଣିରେ କିଛି କୁହୁକ ବହି ଅଛି, ତୁମେ ସେ ସବୁକୁ ପଢ଼ିବାକୁ ଚାହିଁପାର ।"

ଆମେ ବଗିଚା ଭିତରକୁ ବୁଲିଗଲୁ ଓ ପ୍ରଥମ ଥର ପାଇଁ ମୁଁ ଲିକୀଙ୍କୁ ବିବ୍ରତ ଥିବାର ଦେଖିଲି । ସେ କହିଲେ, "ହେତ୍, ଏହା ସତରେ ବଡ଼ ବିରକ୍ତିକର ।" ପାଖରେ ତାଙ୍କ ମୁଣିଟା ମୁକୁଳା ପଡ଼ିଥିଲା ଓ ତା'ଭିତରର ଜିନିଷପତ୍ର ଖୋଳାଇ ହୋଇ ପଡ଼ିଥିଲା । ମୁଣିକୁ ବାନ୍ଧିଥିବା ସାପ କ୍ଲିମେଣ୍ଟିନାର ଦେହର ଅଧା ଗୁଡ଼ାଇହୋଇ ଘାସରେ ରହିଥିଲା ଓ ବାକି ଅଧକ ଛିଡ଼ାହୋଇ ନିଶାରେ ଥିଲା ପରି ମୁଣ୍ଡକୁ ଏପଟ ସେପଟ କରୁଥିଲା । ଲିକୀ କହିଲେ, "ମୋର ଯୁବକ ବେଳରେ ସାପସବୁ ଯେମିତି ଥିଲେ ଏବେ ସେମିତି ନାହାନ୍ତି ।" ଚନ୍ଦ୍ରଜ୍ୟୋତିଷ କହିଲେ ମୁଁ ଭାବୁଛି ମୋର ଚାକର ପ୍ୟାରିଲାଲ ତାକୁ ବଶ କରି ଦେଇଛି । ତାକୁ ଡକାଇବାରୁ କେହି ଆସିଲେ ନାହିଁ । ମୁଁ ଜାଣିନଥିବା ଭାଷାରେ ଲେଖା ଗୋଟିଏ ବହି ମେଲି ହୋଇ ପଡ଼ିଥିଲା । ଲିକୀ ପଚାରିଲେ, "ସେ କ'ଣ ଦେବନାଗରୀ ପଢ଼ିପାରନ୍ତି ?" ଚନ୍ଦ୍ରଜ୍ୟୋତିଷ କହିଲେ, "ହଁ, କିନ୍ତୁ ସେ ଏତେ ଭଲ ଯାଦୁକର ନୁହେଁ ।" ତାହା ଆମପାଇଁ ଭଲ, କାରଣ ବହିଟି ମଣିଷଙ୍କୁ ଝିଣ୍ଟିକା କରିଦେବା ମନ୍ତ୍ର ପୃଷ୍ଠାରେ ଖୋଲା ଅଛି । ସେ ଆମମାନଙ୍କୁ ଝିଣ୍ଟିକାରେ ପରିଣତ କରିଦେଇଥା'ନ୍ତେ, ଆଉ ମୁଁ ଜାଣେ ଯେ ମୁଁ ଭଲ ଭାବରେ ଝିଁ ଝିଁ କରିପାରିବି ନାହିଁ । ତେବେ ସେ ତା ନିଜ କାମର ଫଳ ପାଇଛି । ୧୭ ପୃଷ୍ଠାର ମନ୍ତ୍ରକୁ ବୋଧେ ସେ ଆଗ ପଢ଼ିନାହିଁ, ତେଣୁ ସେ ନିଜେ ଗୋଟିଏ ଝିଣ୍ଟିକା ପାଲଟିଯାଇଛି ।"

"ଆଚ୍ଛା ହେଉ, ଯାହାହେଲେ ବି ସେ ଗୋଟିଏ ଭଲ ସେବକ ଥିଲା । ତେଣୁ ଆମେ ତାକୁ ପୁଣି ମଣିଷ କରିଦେବା । ସୌଭାଗ୍ୟକୁ ମୁଁ ଗୋଟିଏ ମନ୍ତ୍ର ଜାଣେ ଯାହା ମାଇଲକ ଭିତରେ ଥିବା ସବୁ ଝିଣ୍ଟିକାଙ୍କୁ ଟାଣିଆଣିବ । ଏହା ପ୍ରକୃତରେ ଏକ କଳା କୁହୁକ ଯାହାକୁ ବ୍ୟବହାର କରି ଯୁବ ଯାଦୁକରମାନେ ପଡ଼ୋଶୀମାନଙ୍କର ଫସଲ ନଷ୍ଟ କରିଦିଅନ୍ତି । ମୋର କାଲିକୋ ଝୋଲଟିକୁ ଆଣ ତ ! ଏହି ମନ୍ତ୍ରଟି ଶ୍ରୀ ଲିୟରଙ୍କର ଏକ ବଡ଼ ଉଦ୍ଭାବନ । ଗତ ଶହେ ବର୍ଷ ଭିତରେ ଇଂଲଣ୍ଡରେ ବାହାରିଥିବା ଶ୍ରେଷ୍ଠ ଯାଦୁଗୁଡ଼ିକ ଭିତରୁ ତାହା ଗୋଟିଏ । ଶ୍ରୀ ଲିକୀ ଦୟାକରି ତୁମେ ମୋ କମଳାଗଛ ଚାରିପଟେ ତିନୋଟି ସୁରକ୍ଷା ବଳୟ ଟାଣିଦିଅ । ସେଗୁଡ଼ିକ ଯେପରି ଝିଣ୍ଟିକାମାନଙ୍କ ଆକ୍ରମଣରୁ ବଞ୍ଚିବ । ଆଉ, ଘାସକୁ ବି ରକ୍ଷା କରାଯାଉ ।"

ଶ୍ରୀମତୀ ନୁର୍-ଇ-ଦୁନିଆ ଚନ୍ଦ୍ରଜ୍ୟୋତିଷ (ତାହା ଥିଲା ନାରୀ ବେତାଳଙ୍କ ନାମ) ଗୋଟିଏ ବିରାଟ କାଲିକୋ ଝୋଲ ଧରି ଘରୁ ଆସିଲେ ଓ ଶ୍ରୀ ଚନ୍ଦ୍ରଜ୍ୟୋତିଷ ତାହା

ଚାରିପଟେ ନାଚିବାରେ ଲାଗିଲେ । ତାଙ୍କ ପରି ମୋଟା ଲୋକ ଏତେ ବେଗରେ ନାଚିପାରିବେ ବୋଲି ମୁଁ କଳ୍ପନା କରିନଥିଲି । ତୃମ ଚାରିପଟେ ଘୂରିବା ସମୟରେ ସେ ତାହାକୁ ଗୋଟିଏ ବାଇଗଣୀ ରଙ୍ଗର ଛଡାରେ ବଜାଇଲେ ଓ ମନ୍ତ୍ରଟି ପଢ଼ିଲେ । ସେ ମନ୍ତ୍ରଟି ମୁଁ ଏଠି କହିଦେଉଛି, କାରଣ ଲିକୀ କହିଲେ ଯେ ଠିକ ଭାବରେ ନାଚିନପାରିଲେ ତାହା କାମକରିବନାହିଁ ।

କାଲିକୋ ଢୋଲ ବାଜେ, ଝିଣ୍ଟିକା ବେଗେ ଆସେ,
ପ୍ରଜାପତି, ପୋକ ମହୁମାଛି ଯେତେ
ଭୂଇଁ ଉପରେ ଘୂରି ଘୂରି ବୁଲ,
ତେଇଁ କୁଦି ଯେତେ ମତେ ।
କେବେ ସେ କିନ୍ତୁ ଫେରିଲେନାହିଁ,
କେବେ ସେ ଫେରିନଥିଲେ ।
କେବେ ସେ ଫେରିନଥିଲେ,
ପାଖକୁ ମୋହର କେବେ ସେ ଫେରିନଥିଲେ ।

ଏହି ସମୟରେ ନୁର୍-ଇ-ଦୁନିଆ ଆମ ମୁଣ୍ଡ ଉପରେ ଉଡୁଥିଲେ ଓ କିଛି କୁହୁକ କରୁଥିଲେ । ଲିକୀ କହିଲେ, ବୃତ୍ତ ଭିତରୁ ପ୍ରଜାପତି, ପୋକ ଓ ମହୁମାଛିମାନଙ୍କୁ ତଡ଼ିଦେବାକୁ ଏହି ବ୍ୟବସ୍ଥା । ଆକାଶରେ ପ୍ରବଳ ଗୁଣୁଗୁଣୁ ଶବ୍ଦ ଶୁଣାଗଲା ଓ ପୋକମାନେ ଆସିବାରେ ଲାଗିଲେ । କିଛି ପ୍ରଜାପତି ଓ ଗଣ୍ଡା ଭଳି ଏକ ବିରାଟ ଶିଙ୍ଗଥିବା ବଡ଼ ଭଁଅର ପୋକ ବି ଆସିଗଲେ, କାରଣ ତାଙ୍କୁ ବାଦଦେବାର ମନ୍ତ୍ର ପଢ଼ା ସରିନଥିଲା । ଶେଷରେ କେବଳ ଝିଣ୍ଟିକାମାନେ ଆସି ତଳେ ଗଦା ହୋଇଗଲେ । ଅନ୍ୟ ପୋକ ସବୁ ଘର ଉପରେ ଉଡ଼ିବାରେ ଲାଗିଲେ । ମିନିଟକ ମଧ୍ୟରେ ଆମ ଉପରେ ଆକାଶ ଅନ୍ଧାର ହୋଇଗଲା ଓ କିଛି ଚଢ଼େଇ ଆସି ପୋକମାନଙ୍କୁ ଧରିବାରେ ଲାଗିଲେ । ଶ୍ରୀ ଚନ୍ଦ୍ରଜ୍ୟୋତିଷ କହିଲେ, "ତାହା ଚଳିବନାହିଁ । ମୁଁ ମୋର ଅତିଥିମାନଙ୍କୁ ଖାଦ୍ୟ ହେବାକୁ ଦେବି ନାହିଁ । ଏହାଛଡ଼ା ସେମାନେ ପ୍ୟାରିଲାଲଙ୍କୁ ବି ଖାଇଦେଇ ପାରନ୍ତି । ଦୟାକରି ସେମାନଙ୍କୁ ତଡ଼ିଦିଅ । ନୁର୍-ଇ-ଦୁନିଆ ପୋକମାନଙ୍କ ମେଘ ତେଇଁ ଉଡ଼ିଗଲେ ଓ ଚଢ଼େଇମାନଙ୍କୁ ଘଉଡ଼ାଇଦେଲେ । ମୁଁ ଯେତେବେଳେ ତଳକୁ ଚାହିଁଲି, ସାରା ପଡ଼ିଆ ଝିଣ୍ଟିକାରେ ଢାଙ୍କିହୋଇଯାଇଥିଲା । ସାନ ବଡ଼ ନାନା ଜାତିର ସେମାନେ ଥିଲେ । ବିଲାତରେ ଦେଖୁଥିବା ଛୋଟ ଝିଣ୍ଟିକା ଠାରୁ ଆରମ୍ଭ କରି ବଡ଼ ଚିଙ୍ଗୁଡ଼ି ପରି ସେମାନଙ୍କର ଆକାର । ଆଉ, ପ୍ରତି ମୁହୂର୍ତ୍ତରେ ଅଧିକ ଆସିବାରେ ଲାଗିଥିଲେ ।

ଉପରେ ଏତେ ପ୍ରଜାପତି, ଗୋବର ପୋକ ଓ ମହୁମାଛି ଉଡୁଥିଲେ ଯେ ସବୁଆଡ଼

ଅନ୍ଧାର ହୋଇଗଲା । ଚାକରମାନେ ଦୀପ ସବୁ ଜାଳିଦେଲେ । ଗୋଟିଏ ମସ୍ତ ବଡ଼ ହୀରାଖଣ୍ଡକୁ ମଧ୍ୟ ଆଣିଲେ ଯାହାଭିତରୁ ଆଲୁଅ ବାହାରୁ ଥାଏ । ସେଇ ଆଲୁଅରେ ଆମେ ଦେଖିଲୁ ଦଳ ଦଳ ଝିଣ୍ଟିକା ଆସି ପରସ୍ତ ପରସ୍ତ ହୋଇ ସାଲୁବାଲୁ ହେଉଛନ୍ତି । ସାରା ପଡ଼ିଆ ଓ କାଛ ବାଡ଼ରେ ସେମାନେ ଛାଇ ହୋଇଯାଇଥିଲେ । ଶହ ଶହ ବିଦ୍ୟୁତ ଘଣ୍ଟି ପରି ସେମାନେ ଶବ୍ଦ ସୃଷ୍ଟି କରୁଥିଲେ । କଥାବାର୍ତ୍ତା ହେଲାବେଳେ ଆମକୁ ଚିତ୍କାର କରିବାକୁ ପଡୁଥିଲା । ଅଳ୍ପ ସମୟ ପରେ ଲିକୀ ଗୋଟିଏ ବହିରୁ ମନ୍ତ୍ର ପଢି ସେମାନଙ୍କୁ ଚୁପ କରିଦେଲେ ।

ସେ ପଚାରିଲେ, "କିଏ ପ୍ୟାରିଲାଲ ଜାଣିପାରୁଛନ୍ତି କି? ମୁଁ ପାରୁନାହିଁ । ଅଲଗା ଦିଶୁଥିବା ପୋକଙ୍କ ଉପରେ ମୁଁ ମୋର ମନ୍ତ୍ର ପ୍ରୟୋଗ କରିପାରିବି । କିନ୍ତୁ ତାହା ଏକ ସମୟରେ ମାତ୍ର ସାତୋଟିଙ୍କ ଉପରେ କାମ ଦେବ । ମାତ୍ର ଏଠାରେ ତ କୋଟିଏ ଖଣ୍ଡେ ଜମା ହୋଇଛନ୍ତି ।"

ଲିକୀ କହିଲେ, "ବ୍ୟସ୍ତ ହୁଅନ୍ତୁ ନାହିଁ । ଅବ୍‌ଦୁଲ ମକ୍କର ଏବେ ଏଠାରେ ପହଞ୍ଚିବ । ସେ ମନ୍ତ୍ର ବଳରେ ପଶୁ ପାଲଟିଥିବା ଯେ କୌଣସି ସ୍ତ୍ରୀ ବା ପୁରୁଷଙ୍କୁ ବାହାର କରିଦେବ । ସେ କୁହେ ଯେ ରୂପ ବଦଳାଇଥିବା ମଣିଷମାନେ କୁଆଡ଼େ ମିକି ମାଉସ ପରି ଦେଖାଯାଆନ୍ତି । ଆରେ ସେ ତ ପାଞ୍ଚ ମିନିଟ ବିଳମ୍ବ କଲାଣି । ମୁଁ ମୋର କୁହୁକ ମୁଦିକୁ ଘଷିବାକୁ ପଡ଼ିବ । ମୁଁ ଏହା କରିବାକୁ ପସନ୍ଦ କରେନାହିଁ । କାରଣ ଏହା ତାକୁ ଥାଳିରେ ଛୁରୀ ଘଷିବା ଭଳି କଷ୍ଟକର ଶୁଣାଯିବ । କିନ୍ତୁ ବିଳମ୍ବ କରିଥିବାରୁ ଏହା ତାକୁ ଭୋଗିବାକୁ ପଡ଼ିବ । ନିଷ୍ଠୁର ହେଲେ ବି ବେତାଳକୁ ଖୋଜିବା ପାଇଁ ଏ ମୁଦି ଖୁବ୍ ସାହାଯ୍ୟ କରେ, ଆଲ୍ଲାଦିନଙ୍କ ସମୟରେ ଯେପରି ସମସ୍ତେ କରୁଥିଲେ । ତାଙ୍କର ଦୀପଟି ଏବେ ଭିଏନାରେ ରହୁଥିବା ଜଣେ ଭଦ୍ର ମହିଳାଙ୍କ ପାଖରେ ଅଛି । ତାଙ୍କ ବେତାଳ କିନ୍ତୁ ନିର୍ଦ୍ଦିଷ୍ଟ ସମୟରେ କାମକରୁଛି, ତେଣୁ ତାଙ୍କୁ ମାସକ ଭିତରେ ଥରେ ବି ସେ ଦୀପକୁ ଘଷିବାକୁ ପଡ଼େନାହିଁ ।

ଏହି ସମୟରେ ଅବ୍‌ଦୁଲ୍ଲ ମକ୍କର ଝିଣ୍ଟିକା ଗଦାକୁ ଆଡ଼େଇ ମାଟି ଭିତରୁ ବାହାରି ଆସିଲା । କିନ୍ତୁ ସେ ଭାରି ଅସୁଖୀ ଥିଲା ଏବଂ ଲମ୍ବା ଲମ୍ବା ଶବ୍ଦରେ କ୍ଷମା ମାଗିବାରେ ଲାଗିଲା । ମାତ୍ର ଲିକୀ ତାକୁ କଥା ବନ୍ଦକରି ପ୍ୟାରିଲାଲକୁ ବାହାର କରିବାକୁ କହିଲେ । ସେ ମୁହୂର୍ତ୍ତକ ମଧ୍ୟରେ ତାକୁ ପାଇଗଲା ଓ ସହଜରେ ତାକୁ ଧରି ଆଣିଲା । ତା'ପରେ ଚନ୍ଦ୍ରଜ୍ୟୋତିଷ କ'ଣ ମନ୍ତ୍ର କରିଦେବାରୁ ସେ ମଣିଷ ହୋଇଗଲା । ଏହି ରୂପ ବଦଳା ଦେଖିବାକୁ ଭାରି ମଜା ଲାଗିଲା । ପ୍ରଥମେ ଝିଣ୍ଟିକାଟି ଫୁଲିବାକୁ ଲାଗିଲା ଓ ତା'ର ଚମଡ଼ା ଫାଟିଗଲା । ଯେମିତି ଛୋଟ ଝିଣ୍ଟିକାର ରୂପାନ୍ତରଣ ବେଳେ ହୋଇଥାଏ ।

ସେଥିରୁ ଅଂଶେଇ ଭଳି ଜୀବଟିଏ ବାହାରି ଜୋରରେ ବଢ଼ିବାକୁ ଲାଗିଲା । ଲାଲ ରଙ୍ଗର ଗୋଟିଏ ଲମ୍ବା ପୋକ ହୋଇଗଲା । ତା'ପରେ ତା'ଦେହର ଚାରୋଟି ଜାଗାରେ ଗୋବଭଳି ଫୁଲିଗଲା ଓ ସେଠାରୁ ତା'ର ଗୋଡ଼ହାତ ସବୁ ବାହାରିଲା । ପୋକର ଆଗ ଅଂଶଟି ପଛକୁ ବଙ୍କେଇଗଲା ଓ ମୁଣ୍ଡରେ ପରିଣତ ହେଲା । ତା'ର ଗୋଡ଼ହାତରୁ କ୍ରମେ ଆଙ୍ଗୁଠି ସବୁ ବାହାରିଲା । ଏହି ସମୟ ଭିତରେ ତା'ର ଦେହ ବଢ଼ିବାରେ ଲାଗିଥାଏ । ମାତ୍ର ଦୁଇ ମିନିଟରେ ଆମ ଆଗର ଘାସ ପଡ଼ିଆରେ ଗୋଟିଏ ମଣିଷ ଠିଆ ହୋଇଗଲା । ସେ ଭୀଷଣ ଡରିଯାଇଥାଏ । ତା'ଠାରୁ ବେଶୀ ଡରିଥିବା ମଣିଷ ବୋଧହୁଏ ମୁଁ ଆଉ କେବେ ଦେଖିନାହିଁ । ମୋତେ ସବୁଠୁ ବେଶି ଆଶ୍ଚର୍ଯ୍ୟ ଲାଗିଲା ଯେ ଝିଣ୍ଟିକାର ପଛପଟଟି ପ୍ୟାରିଲାଲର ଦେହର ଆଗପଟ ହେଲା । ପରେ ମୋର ଜଣେ ପ୍ରାଣୀବିଜ୍ଞାନୀ ବନ୍ଧୁଙ୍କଠାରୁ ଜାଣିବାକୁ ପାଇଲି ଯେ ଏହା ଠିକ ଅଛି । କାରଣ ଝିଣ୍ଟିକାର ପଛରେ ଥାଏ ତା'ର ହୃତପିଣ୍ଡ । ତା'ପରେ ଥାଏ ତା'ର ଅନ୍ତନଳୀ ଓ ସ୍ନାୟୁପ୍ରଣାଳୀ । ତେଣୁ ଆମେ କହିପାରିବା ଯେ ଝିଣ୍ଟିକାର ପଛ ପ୍ରକୃତରେ ତା'ର ଆଗ କିମ୍ବା ମଣିଷର ଆଗ ପ୍ରକୃତରେ ତା'ର ପଛ ।

ପ୍ୟାରିଲାଲ ମୁହଁମାଡ଼ି ପଡ଼ିଗଲା ଓ ଭୟରେ କାନ୍ଦିବାକୁ ଲାଗିଲା । ଚନ୍ଦ୍ରଜ୍ୟୋତିଷ ଗୋଟିଏ ମନ୍ତ୍ର ପଢ଼ି ତାକୁ ଠିକ କରିଦେଲେ । ମାତ୍ର ତା'ମୁହଁର ଗୋଟିଏ ପାଖ ଥିଲା ଲାଲ ଓ ଅନ୍ୟ ପାଖଟି ସବୁଜ ଏବଂ ମୁଣ୍ଡବାଳ ଥିଲା କଡ଼ା ବାଇଗଣୀ । ଚନ୍ଦ୍ରଜ୍ୟୋତିଷ କହିଲେ, "ସେ ସପ୍ତାହେ ଏମିତି ରହିବ । ମୁଁ ଭାବୁଛି ଯେ ସେ କାଲି ତା'ର ଛୁଟି ସନ୍ଧ୍ୟାରେ ସେ କୁଆଡ଼େ ବାହାରିବ ନାହିଁ ।" ତା'ପରେ ଆମେ ଢୋଲ ଚାରିପଟରୁ ଝିଣ୍ଟିକାମାନଙ୍କୁ ଆଡ଼େଇଦେଲୁ ଓ ଚନ୍ଦ୍ରଜ୍ୟୋତିଷ ତା' ଚାରିପଟେ ପଛଆଡୁଆ ନାଚିଲେ । ଏଥର ନାଚିଲାବେଳେ ସେ 'ଫେରିଆସିଲେ ନାହିଁ' ଭାଗଟି ଗାଇବାରୁ ଝିଣ୍ଟିକା ଓ ଅନ୍ୟ ପୋକ ସବୁ ଖୁବ୍ ଶବ୍ଦ କରି ପଳାଇଲେ । କିନ୍ତୁ ଚାରିଆଡ଼େ ଆଗଭଳି ଅନ୍ଧାର ରହିଲା, କାରଣ ଏଭିତରେ ସୂର୍ଯ୍ୟ ଅସ୍ତ ହୋଇଯାଇଥିଲା ।

ମୁଣିରେ ଆପେ ଆପେ ଜିନିଷ ରହିଗଲା ଓ କ୍ଲେମେଣ୍ଟିନା ଏବେ ସୁସ୍ଥ ହୋଇ ସେଥିରେ ନିଜକୁ ଗୁଡ଼ାଇ ବାନ୍ଧି ହୋଇଗଲା । ପମ୍ପେର ଉନ୍ନେଇରେ କୋଇଲା ଭରାଗଲା ଓ ଗାଲିଚା ଖୋଲିକରି ସମସ୍ତେ ବସିଲେ । ଲିକୀ କହିଲେ, "ଏବେ ଆମେ ପୃଥିବୀର ଆରପଟେ ବୁଲିକରି ଯିବା । ଅବଶ୍ୟ ଆମର ପୂର୍ବଦିଗକୁ ରାତି ହୋଇଥିବ । କିନ୍ତୁ ବେତାର ତରଙ୍ଗ ଭଳି କୁହୁକ ଗାଲିଚା ରାତିରେ ଭଲ ଯାଇପାରେ । ଆମେରିକାରେ କେଉଁଠିକୁ ଯିବାକୁ ଚାହାନ୍ତି ?" ମୁଁ କହିଲି, "ମୁଁ ଦକ୍ଷିଣ ବା କେନ୍ଦ୍ର ଆମେରିକାକୁ ଯିବାକୁ ଚାହେଁ । କାରଣ ମୁଁ ଅଣକୁହୁକ ଧାରାରେ ମୁଁ ଉତ୍ତର ଆମେରିକା ଯିବାର ସମ୍ଭାବନା

ଭଲ । ତା'ଛଡ଼ା ସିନେମାରେ ମଧ୍ୟ ଏସବୁ ସ୍ଥାନ ବହୁତ ଦେଖିଛୁ ।"

ଆମେ ଚନ୍ଦ୍ରଜ୍ୟୋତିଷ ଓ ତାଙ୍କ ସୁନ୍ଦରୀ ସ୍ତ୍ରୀମାନଙ୍କଠାରୁ ବିଦାୟ ନେଲୁ । କେବଳ ନୁର୍-ଇ-ଦୁନିଆ ଆମ ସାଥିରେ ୱାକ୍‌ୱାକ୍ ଦ୍ୱୀପ ଯାଏଁ ଆସିଲେ । ସେଠାରେ ରହୁଥିବା ତାଙ୍କର ଜଣେ ଭଉଣୀଙ୍କ ପାଖକୁ ସେ ଯିବେ ଏବଂ ଶୋଇବା ବେଳକୁ ଫେରିଆସିବେ - କିନ୍ତୁ ଯିବା ଓ ଆସିବାରେ ଦୁଇଥର ଉଡ଼ିବା ପାଇଁ ତାଙ୍କୁ ଅଳସ ଲାଗୁଥିଲା। ତା'ପରେ ଆମେ ଦକ୍ଷିଣପୂର୍ବ ଦିଗରେ ଚାଲିଲୁ । ଆକାଶରେ ଛୋଟିଆ ଜହ୍ନଟିଏ ଥିଲା। ପାଞ୍ଚ ମାଇଲ ଉପରେ ତାରାଗୁଡ଼ିକ ଏତେ ଉଜଳ ଦିଶୁଥିଲେ ଯେ ମୁଁ ବେଶ୍ ଅଧିକ ସଂଖ୍ୟାର ତାରା ଦେଖିପାରିଲି । ଆମେ ଯେତେ ଦକ୍ଷିଣ ଆଡ଼କୁ ଆଗେଇଲୁ ସେତେ ନୂଆ ତାରାମଣ୍ଡଳ ଦେଖିବାକୁ ମିଳିଲା । କାଳପୁରୁଷ ମଣ୍ଡଳର ତଳୁ ଛୋଟ ଛୋଟ ତାରାର ବଡ଼ନଦୀଟିଏ ଆକାଶରେ ଲମ୍ବି ଯାଇଥିବାର ମୁଁ ଦେଖିଲି । ଏହାର ଶେଷରେ ଥିବା ଉଜ୍ଜଳ ତାରାଟିର ନାଁ ହେଲା ନଦୀମୁଖ (*ଆଚେରନାର*) । ଯେତେବେଳେ କାଳପୁରୁଷ ଓ ତା'ର କୁକୁର ମୃଗବ୍ୟାଧ ମଣ୍ଡଳଦୁଇଟି ଆକାଶରେ ଉପରକୁ ଉଠିଲେ, କୁକୁରର ଲାଞ୍ଜ ତଳକୁ ଅଗସ୍ତ୍ୟ (*କ୍ୟାନୋପସ୍*) ନକ୍ଷତ୍ର ଦେଖାଗଲା । ମିନିଟିଏ ଦୁଇମିନିଟ ଭିତରେ ଆମେ ଚନ୍ଦ୍ରକିରଣରେ ରୁପା ପରି ଝଲସୁଥିବା ଭାରତ ମହାସାଗର ଉପରେ ଉଡ଼ିଲୁ । ଆମେ ନିକୋବର ଦ୍ୱୀପପୁଞ୍ଜ ଓ ମାଳୟ ଉପଦ୍ୱୀପ ପାରହେଲୁ । ଚକ୍ରବାଳ ତଳେ ଧ୍ରୁବତାରା ଲୁଚିଯିବାର ଦେଖିଲି । ନୁର୍-ଇ-ଦୁନିଆ ଓ ଅବ୍‌ଦୁଲ ମଙ୍କର ସେମାନଙ୍କ ଭାଷାରେ ଖୁବ୍ ଗପିଚାଲିଥିଲେ । ଏମିତିକି ଲିକୀ ମଧ୍ୟ ତାଙ୍କ କଥା ଭଲ ଭାବରେ ବୁଝିପାରୁନଥିଲେ ବୋଲି ମାନିଲେ । ମୁଁ କିନ୍ତୁ ବୁଝିପାରିଲି ଯେ ଅବ୍‌ଦୁଲ ମଙ୍କରର ମାଉସୀଙ୍କର ଅଧିକଗୁଡ଼ିଏ ଦାନ୍ତ ଉଠୁଥିବାରୁ ତାଙ୍କୁ ବିବ୍ରତ ଲାଗୁଛି । ସେମିତି ତାଙ୍କର ଦୃଷ୍ଟିଶକ୍ତି ଏତେ ବଢ଼ିଯାଇଛି ଯେ ଡାକ୍ତରମାନଙ୍କ ଏକ୍ସରେ ଭଳି ସେ ମଣିଷ ଓ ଜିନିଷ ସବୁର ଭିତର ଦେଖିପାରୁଛନ୍ତି । ତେଣୁ ସେ କଳା ଚଷମା ନ ପିନ୍ଧିଲେ ସମସ୍ତଙ୍କ ଦେହରେ ଧକ୍କା ଖାଉଛନ୍ତି । ଅବଶ୍ୟ ବେତାଳମାନଙ୍କ ପାଇଁ ଏସବୁ ହେଉଛି ବୁଢ଼ା ବୟସର ସାଧାରଣ ସମସ୍ୟା, ଠିକ ଯେମିତି ଆମେ ଯେମିତି ବୁଢ଼ା ହେଲେ ଦାନ୍ତ ଓ ଦୃଷ୍ଟିଶକ୍ତି ହରାଇ ବସୁ ।

ସମୁଦ୍ର ଉପରେ କିଛି ଦୂର ଯିବା ପରେ ଆମର ଡାହାଣ ପଟେ ଏକ ବିରାଟ ଲାଲ ଆଲୋକ ଆମେ ଦେଖିଲୁ । ଶ୍ରୀ ଲିକୀ କହିଲେ, "ତାହା ହେଉଛି ଜାଭାରେ ଗୋଟିଏ ଆଗ୍ନେୟଗିରିର ଉଦ୍‌ଗୀରଣ । ଅବଶ୍ୟ, ଆମେ ଆମ ବାଟରୁ କିଛି ଦୂରେଇ ଯାଇଛେ ।" ଆମେ ବାମ ପଟକୁ ଟିକିଏ ମୋଡ଼ିଲୁ ଓ ଅଳ୍ପ ସମୟରେ ମୋଲୁକା ଦ୍ୱୀପପୁଞ୍ଜ ଉପରେ ଉଡ଼ିଲୁ । ମୁଁ ଜାଣିଥିଲି ଯେ ତାହାକୁ ୱାକ୍‌ୱାକ୍ ଦ୍ୱୀପପୁଞ୍ଜ କୁହାଯାଏ । ଆରବ୍ୟ ରଜନୀ

କାହାଣୀରେ ଏହା ବର୍ଣ୍ଣିତ ହୋଇଛି । ନୂର୍-ଇ-ଦୁନିଆ ଲିକୀଙ୍କୁ ଏକ ଚୁମ୍ବନ ଦେଇ ବିଦାୟ ନେଲେ ଓ କୁହୁକ ଗାଲିଚାରୁ ଓହ୍ଲାଇଗଲେ । ଲିକୀ କହିଲେ, "ଏଥର ଆମେ କେନ୍ଦ୍ର ଆମେରିକାକୁ ଯିବା । କେଉଁ ବାଟେ ଆମେ ଯିବା, ସେଥିରେ ବିଶେଷ କିଛି ଯାଏ ଆସେ ନାହିଁ । ଆମେ ପ୍ରକୃତରେ ପୃଥିବୀ ଉପରେ ବ୍ରିଟିଶ ଗାଏନାର ପ୍ରାୟ ବିପରୀତ ଦିଗରେ ଅଛେ । ତେଣୁ ଯେଉଁ ପଟେ ଗଲେ ବି ଆମକୁ ୨୦,୦୦୦ କିଲୋମିଟର ଯିବାକୁ ହେବ ।" ମୁଁ କହିଲି, "ଦକ୍ଷିଣକୁ ଚାଲନ୍ତୁ । ଦକ୍ଷିଣମେରୁ ଉପରେ ଚାଲିଯିବା । ସେଠାରେ ଏବେ ଦିନ ହୋଇଥିବ ।" ଲିକୀ କହିଲେ, "ଆପଣ ଠିକ କହୁଛନ୍ତି ।" ଦକ୍ଷିଣ ଦିଗକୁ ମୁହାଁଇଲୁ । ଯେଉଁ ବାଟରେ ଉଡ଼ାଜାହାଜ ତାକ ଯାଏ ଆମେ ସେ ବାଟରେ ପ୍ରାୟ ଦୁଇଶହ ଗୁଣ ଅଧିକ ବେଗରେ ଅଷ୍ଟ୍ରେଲିଆକୁ ପାରିହେଲୁ ଏବଂ ବଡ଼ ମରୁଭୂମି ଉପରେ ଦକ୍ଷିଣମୁହାଁ ହୋଇ ଉଡ଼ିଗଲୁ । ଆମେ ଦେଖିଲୁ ଗୋଟିଏ ହ୍ରଦ ଚନ୍ଦ୍ରାଲୋକରେ ଝିଲିମିଲି କରୁଥିଲା । ସହର ଆଦିର ଆଲୁଅ କିନ୍ତୁ ଜମା ନଥିଲା । ଅନେକ ତାରା, ଯେଉଁମାନଙ୍କୁ ମୁଁ ଆଗରୁ ଜାଣିନଥିଲି, ସେମାନେ ମୁହଁ ଦେଖାଇଲେ । ପ୍ରଥମେ ମୁଁ ଧୂମକେତୁ ପରି ଦୁଇଟି ଅନିୟମିତ ଆକାରର ଆଲୁଅ ଦେଖିଲି, ଯାହାକୁ ଲିକୀ ମାଗେଲାନ୍ ମେଘ ବୋଲି କହିଲେ । ଅଷ୍ଟ୍ରେଲିଆର ଦକ୍ଷିଣରେ ଉଡ଼ିଲା ବେଳେ ଆମେ ତ୍ରିଶଙ୍କୁ *(ସଦର୍ଣ୍ଣ କ୍ରସ୍)* ଓ ମହିଷାସୁର *(ସେଣ୍ଟରସ୍)* ତାରାମଣ୍ଡଳ ଦେଖିଲୁ । ତା'ପରେ ସୂର୍ଯ୍ୟ ଦକ୍ଷିଣ-ପଶ୍ଚିମ ଦିଗରେ ଉଦୟ ହେବାର ଦେଖି ମୁଁ ଅବାକ ହେଲି, ଯାହାକୁ ମୁଁ ପରେ ସାଧାରଣ କଥା ବୋଲି ଭାବିଲି । ଆମର ତଳକୁ ମେଘମାଳା ଭରି ରହିଥାଏ । ମେଘର ଫାଙ୍କରେ ବଡ଼ ବଡ଼ ବରଫ ଖଣ୍ଡରେ ଭରା ଏକ ଥଣ୍ଡା ପାଉଁଶିଆ ସମୁଦ୍ର ମଝିରେ ମଝିରେ ଦେଖାଯାଉଥାଏ ।

ମୁଁ ପଚାରିଲି, "ସମୁଦ୍ର ତଟରେ ଆମେ ଅଟକିଯିବା କି ? ମୁଁ ପେଙ୍ଗୁଇନ ଚଢ଼େଇ ଦେଖିବାକୁ ଚାହୁଁଛି ।" ଲିକୀ ଉତ୍ତର ଦେଲେ, "ନିଶ୍ଚୟ, କିନ୍ତୁ ଆମର କିଛି ଗରମ ପୋଷାକ ଦରକାର ହେବ । ମେରୁଦେଶରେ ସୂର୍ଯ୍ୟକିରଣ ପଡ଼ିଥିଲେ ବି ସେଠାରେ ଜୋର ପବନ ବହୁଥାଏ । କ୍ଲିମେଣ୍ଟିନା, ମୁଣି ଖୋଲିଦିଅ ।" ମୁଣି ଭିତରୁ ସେ ବାହାର କଲେ ଦୁଇଟି ଲୋମଶ ଚମଡ଼ା କୋଟ, ମୋଟା ମୋଜା, ବଡ଼ ବୁଟ୍ ଓ ଆଉ କିଛି ଗରମ ପୋଷାକ, ଯେଉଁଗୁଡ଼ିକ ଦିଲ୍ଲୀରେ ନଥିଲା । ଖଣ୍ଡେ ପାଣି ପାଇପ ଭଳି ଉଲ୍ ଦିଆ ନଳୀ ମଧ୍ୟ ସେ ବାହାର କଲେ ଯେଉଁଥିରେ କ୍ଲେମେଣ୍ଟିନା ପଶିଗଲା ଓ ନିଜକୁ ବାନ୍ଧିଦେଲା । ଆମେ ପ୍ରାୟ ମାଇଲିଏ ଉଚ୍ଚତାକୁ ଖସି ଆସିଲୁ ଓ ଅଳ୍ପ ସମୟ ଭିତରେ ନିଛାଟିଆ ପାହାଡ଼ିଆ ଉପକୂଳରେ ପହଞ୍ଚିଲୁ । ଆମ ପଛରେ ଥିଲା ବରଫର ଧାର ଓ ପର୍ବତମାଳା । ଆମେ କିଛି ସମୟ ପାଇଁ ଉପରେ ରହି ବୁଲି ଦେଖିଲୁ । ସମୁଦ୍ରକୁ ଧୀରେ

ଧାରେ ଗଡ଼ି ଆସିଥିବା ଗୋଟିଏ ଉପସାଗର ପଡ଼ିଲା । ଲିକୀ କହିଲେ, "ଏହା ଗୋଟିଏ ଭଲ ଜାଗା । ପାଖରେ ଏକ ପେଙ୍ଗୁଇନ ସହର ଅଛି, ଯେଉଁଠି ପ୍ରାୟ ପାଞ୍ଚ ଲକ୍ଷ ପେଙ୍ଗୁଇନ ଅଛନ୍ତି । ଏହା ବ୍ରିଷ୍ଟଲ ବା ଲିଡ୍‌ସ ସହର ଆକାରର ଏକ ଜାଗା ।"

"ଏଠାରେ ସେମାନେ ବେଶ୍ ଭଲରେ ଥା'ନ୍ତି । ଅବଶ୍ୟ ଆପଣ ପଚାରି ପାରନ୍ତି, ମୁଁ କିପରି ଜାଣିଲି । ବାଶ୍, ମୁଁ ଜାଣେ । ଆପଣ ହୁଏତ ଜାଣିନଥିବେ ଯେ ପ୍ରାୟ ତିନି ବର୍ଷ ଧରି ମୁଁ ନିଜେ ଏକ ପେଙ୍ଗୁଇନ ଥିଲି । ମୁଁ ଥରେ ଗାଧୋଇଲା ବେଳେ ଯାଦୁ ମୁଦି କାଢ଼ି ଦେଇଥିଲି, ଆଉ ସେହି ସମୟରେ ମୋତେ ଇର୍ଷା କରୁଥିବା ଅନ୍ୟ ଏକ ଯାଦୁକର ମୋତେ ଏମିତି କରିଦେଇଥିଲା । କିଛି ବୁଝିବା ବେଳକୁ ମୁଁ ଦକ୍ଷିଣମେରୁ ମହାସାଗରରେ ପହଁରି ବାଦାମୀ ରଙ୍ଗର ଚିଙ୍ଗୁଡ଼ି (*ଇଉଫାଉସିଆ ସୁପର୍ବା* – ରନ୍ଧା ହେବା ଆଗରୁ ବି ତାଙ୍କର ରଙ୍ଗ ବାଦାମୀ ଥାଏ) ସବୁ ଧରୁଥିଲି । ପେଙ୍ଗୁଇନ ଭାବରେ ମୋର ବାକି ଜୀବନତକ କଟାଇବାକୁ ହେବ ବୋଲି ମୁଁ ଭାବିଥିଲି । ତେଣୁ ମୁଁ ସେଠାରେ ବିବାହ କଲି । ଆମର ଦୁଇଟି ପିଲା ବି ହୋଇଥିଲେ । ମାତ୍ର ମୋର ସ୍ତ୍ରୀକୁ ଗୋଟିଏ ସିଲ୍ ଖାଇଦେଲା । ଏଭିତରେ ମୁଁ ପଥର ଗଦାଇ ଗୋଟିଏ କୁହୁକ ପଞ୍ଚଭୁଜ ତିଆରିକଲି । ଯଦିଓ ମନ୍ତ୍ର ପଢ଼ି ପାରୁନଥିଲି, ମୁଁ ଦୁଇଦିନ ଧରି ତାହା ଭିତରେ ଯାଦୁନାଚ କଲି ଓ ପୁଣି ମଣିଷ ହୋଇଗଲି । "ଯିଏ ଆପଣଙ୍କୁ ପେଙ୍ଗୁଇନରେ ପରିଣତ କରିଥିଲା, ତା' ଅବସ୍ଥା କ'ଣ ହେଲା ?" "ମୁଁ ତାକୁ ବନ୍ଦୀକରି ଆଲବର୍ଟ ମେମୋରିଆଲରେ ଥିବା ରାଜା କନ୍‌ସର୍ଟଙ୍କ ମୂର୍ତ୍ତି ଭିତରେ ରଖିଦେଇଛି । ସେଠାରେ ସେ ବହୁତ କିଛି ଦେଖେ, କିନ୍ତୁ କିଛି କରିପାରେ ନାହିଁ । ରାତିସାରା ଥଣ୍ଡାରେ ମୁହଁ ଶୁଖାଇ ପଡ଼ିଥାଏ । ସମୁଦ୍ର ତଳେ ଗୋଟିଏ ବୋତଲରେ ପଶିରହିବା ବା ମୁଣ୍ଡ ତଳକୁ କରି କୂଅ ଭିତରେ ଝୁଲିବା ଅପେକ୍ଷା ଅବଶ୍ୟ ସେ ଭଲରେ ଥିଲା ।

ଆମେ କିଛି ସମତଳ ବରଫ ଉପରେ ଓହ୍ଲାଇଲୁ ଓ ପେଙ୍ଗୁଇନଗୁଡ଼ିକୁ ଦେଖିଲୁ । ପ୍ରତ୍ୟେକ ହଳ ମାଈ ଓ ଅଣ୍ଡିରା ପେଙ୍ଗୁଇନ ନିଜ ପାଇଁ ପଥରରେ ଗୋଟିଏ ଲେଖାଁ ଗୋଲେଇ ବସା ବାନ୍ଧିଥା'ନ୍ତି । ପିଲା ହେଲାବେଳେ ସେମାନଙ୍କ ମଧ୍ୟରୁ ଜଣେ ବସାରେ ପିଲାଙ୍କ କଥା ବୁଝିବାକୁ ରହିଲେ ଆଉ ଜଣେ ସମୁଦ୍ରକୁ ଚିଙ୍ଗୁଡ଼ି ଧରି ଆଣିବାକୁ ଯାଏ । ହଜାର ହଜାର ସଂଖ୍ୟାରେ ପେଙ୍ଗୁଇନମାନେ ପାଣିରେ ଚବର ଚବର ହେଉଥା'ନ୍ତି । ସନ୍ଧ୍ୟା ପୋଷାକ ପିନ୍ଧା ମୋଟାମଣିଷଙ୍କ ପରି ସେମାନେ ଦେଖାଯାଉଥା'ନ୍ତି । ଅନ୍ୟମାନେ ସମୁଦ୍ର କୂଳରେ ଅଳ୍ପ ଉଚ୍ଚର ବରଫ ପାହାଡ଼ ଉପରେ ଛିଡ଼ାହୋଇ ପାଟିତୁଣ୍ଡକରି ଠେଲାପେଲା ହେଉଥା'ନ୍ତି । ସିନେମାରେ ତୁମେ ଏସବୁ ଦେଖିଥିବ । ଦକ୍ଷିଣମେରୁ ମହାଦେଶରେ ଅନେକଗୁଡ଼ିଏ ବଡ଼ ବଡ଼ ପାହାଡ଼ ଓ ବରଫ ସ୍ରୋତ ଦେଖାଯାଏ । କିନ୍ତୁ

ଜୀବଜନ୍ତୁ କିଛି ଦେଖାଯା'ନ୍ତି ନାହିଁ । ଆମେ ଦକ୍ଷିଣ ମେରୁକୁ ଯାଇ ସେଠାରୁ ପୁଣି ଉତ୍ତର ଦିଗକୁ ଗଲୁ । ସମୁଦ୍ର କୂଳରେ ପହଞ୍ଚି କେପ୍ ହର୍ଣ୍ଣ ପାଖରେ କେତେକ ପାଣିଜାହାଜ ଦେଖିଲୁ । ଦକ୍ଷିଣ ଆମେରିକା ଉପରେ ପହଞ୍ଚି ଆମେ ଘାସପଡ଼ିଆ ଦେଖି ଖୁସି ହୋଇଗଲୁ । ଆର୍ଜେଣ୍ଟିନାରେ କିଛି ବାଟ ତଳକୁ ଖସି ଦେଖିଲୁ ବଡ଼ ବଡ଼ ଗାଈଗୋଠ ଚରୁଛନ୍ତି । ବ୍ରାଜିଲରେ ପହଞ୍ଚିଲା ବେଳକୁ ଖୁବ୍ ଗରମ ଅନୁଭବ କଲୁ । ଖରାରୁ ରକ୍ଷା ପାଇବା ପାଇଁ ମୁଣ୍ଡରେ ଗୋଟିଏ ଟୋପି ଲଗାଇଲି ଓ ଏକ ରେଶମ ସାର୍ଟ ଓ ହାପ୍ ପ୍ୟାଣ୍ଟ ମୁଣିରୁ ବାହାର କରି ପିନ୍ଧି ପକାଇଲି । ମୁଁ ପୁଣି ଦେଖିଲି ଚାରିଆଡ଼େ ଖାଲି ବହଳିଆ ସବୁଜ ପଡ଼ିଆ । ଲିକୀ କହିବାରୁ ମୁଁ ଜାଣିଲି ଯେ ତାହା ଘାସ ନୁହେଁ, ଗଛଗୁଡ଼ିକର ଉପର ଭାଗ । ଆମେ ମିନିଟକ ପାଇଁ ଆମାଜନ ନଦୀ ପାଖରେ ରହିଲୁ । ତାହା ଇଂଲିସ ଚ୍ୟାନେଲ ପରି ଓସାରିଆ ଦିଶୁଥିଲା । ତା'ର ଟାଣୁଆ ସୁଅରେ ବଡ଼ ବଡ଼ ଗଛମାନଙ୍କୁ ଭସାଇ ନେଉଥିଲା । ଆମେ କେତେକ ପର୍ବତ ପାରିହେଲା ପରେ ସମୁଦ୍ର କୂଳକୁ ଆସିଲୁ । ମୋ ଘଣ୍ଟାରେ ସେତେବେଳେ ବାଜିଥିଲା ସାଢ଼େ ତିନିଟା ।

ଲିକୀ କହିଲେ, "ଏବେ ଚାଲ ଯିବା ଗୋଟିଏ ଆଗ୍ନେୟଗିରିର ଉଦ୍‌ଗୀରଣ ଦେଖିବା । କବଚଟି ପିନ୍ଧିଦେଲେ କିଛି ଭୟ କରିବାର ନାହିଁ । ଆକାଶଛତାରେ ଓହ୍ଲାଇବା ବେଳେ ଏହା ଜୀବନରକ୍ଷୀ ବେଲ୍ଟ ପରି କାମ ଦିଏ । ଆମେ ଗୋଟିଏ ଦ୍ୱୀପ ଉପରେ ପହଞ୍ଚିଲୁ । ଯେଉଁଠି ଗୋଟିଏ ଆଗ୍ନେୟଗିରିରୁ ଧୂଆଁପାଉଁଶର ମେଘ ଉପରକୁ ଉଠୁଥିଲା ଓ ଖୁବ୍ ଶବ୍ଦ କରୁଥିଲା । କବଚ ଓ ହଳେ ଆଜବେଷ୍ଟସ୍ ଜୋତା ପିନ୍ଧି ଆଗ୍ନେୟଗିରିର ମୁହଁ ପାଖରେ ଥିବା ଖଣ୍ଡେ କଳା ପଥର ଉପରେ ଆମେ ଓହ୍ଲାଇଲୁ ଓ ତଳକୁ ଅନାଇଲୁ । ଗରମ ବାଷ୍ପର ପ୍ରବଳ ସ୍ରୋତ ଓ ଘର ଆକାରର ଲାଲ୍ ତତଲା ପଥର କ୍ଷୀପ୍ର ଗତିରେ ଆମ ପାଖ ଦେଇ ଉପରକୁ ଉଠୁଥାଏ । ମୁଁ ଜାଣିଥିଲି କବଚ ପିନ୍ଧିଥିବାରୁ ମୁଁ ନିରାପଦ, ତଥାପି ପାଖକୁ ପଥର ଆସିଲାବେଳକୁ ମୁଁ ଆପେ ଆପେ ଘୁଞ୍ଚି ଯାଉଥାଏ । କେତେ ମିନିଟ ପରେ ଏସବୁ ଦୃଶ୍ୟ ଦେଖିବାରେ ମୋର ମନବୋଧ ହୋଇଗଲା ଓ ଆଗ୍ନେୟଗିରିର ବାହାର ପଟେ ତଳକୁ ଚାଲି ଚାଲି ଓହ୍ଲାଇଲୁ । ଉଦ୍‌ଗୀରଣର ଲାଭାସ୍ରୋତ ତଳକୁ ବହିଯାଉଥିଲା । ଏହା ଏକ ଅସୁନ୍ଦର ନିରସ ସ୍ଥାନ ଥିଲା । ପାହାଡ଼ ବଦଳରେ ତାହା ଏକ ଖାଦଲୁହାର ଗଦା ଭଳି ଲାଗୁଥିଲା । ସେଠାରେ ଭୂଇଁ ଅତଡ଼ା ଖସୁଥିଲା ଓ ଗଛଲତା କିଛି ନଥିଲା । କିନ୍ତୁ ପମ୍ପେ ଭାବିଲା, ଏହା ସୁନ୍ଦର ସ୍ଥାନଟିଏ । ସେ ତା ନିଆଁ ଉହ୍ମେଇରୁ କୁଦି ପଡ଼ିଲା ଓ ମୋ ପଛରେ ଉଡ଼ି ଆସିଲା । ମୁଁ ଜାଣିନଥିଲି ଲାଲ ଓ ଉତ୍ତପ୍ତ ଡ୍ରାଗନ ମୋ କବଚକୁ ମାନନ୍ତି କି ନାହିଁ । ମୁଁ ତାକୁ ଏଡ଼ାଇବା ପାଇଁ ଡେଇଁ ପଡ଼ିଲି, ଫଳରେ ମୋର ବଳାଗଣ୍ଠି ମୋଡ଼ିହୋଇଗଲା । କାରଣ ମୁଁ ଏକ ପାଉଁଶ



ଗଦା ପାଖରେ ଠିଆ ହୋଇଥିଲି । ପମ୍ପେ ପାହାଡ଼ ତଳକୁ ଚାଲିଗଲା ଏବଂ ଉତ୍ତପ୍ତ ବାଷ୍ପ ବାହାରୁଥିବା ସ୍ଥାନରେ ପହଞ୍ଚିଗଲା । ମୁଁ ତାକ ଛାଡ଼ିଲି । ଲିକୀ ଦଉଡ଼ି ଆସିଲେ ଓ ମୋର ବଳାଗଣ୍ଠିକୁ ଆଖି ପିଛୁଳାକେ ଠିକ କରିଦେଲେ । ସେ କହିଲେ, "ମୁଁ ଦୁଃଖିତ ଯେ ମୁଁ ଗନ୍ଧକ ସଂଗ୍ରହ କରିବାରେ ବ୍ୟସ୍ତ ଥିଲି । ଯାଦୁ ପାଇଁ କେବଳ ଉଦ୍‌ଗୀରଣରୁ ବାହାରୁଥିବା ଗନ୍ଧକ କାମଦିଏ, କାରଖାନାରୁ ଆସୁଥିବା ରାସାୟନିକ ଗନ୍ଧକ କାମ ଦିଏନାହିଁ । ତେବେ ଏଠାର ଅଧିକାଂଶ ଆଗ୍ନେୟଗିରି ଏହି କାମ ପାଇଁ ପୂରା ବେକାର । କାରଣ ଯେତେବେଳେ ସ୍ପେନ ଦେଶର ଲୋକମାନେ ପ୍ରଥମେ ଏଠାକୁ ଆସିଲେ, ସେମାନେ ଏସବୁ ଆଗ୍ନେୟଗିରିକୁ ଜବତ କରିବାପାଇଁ ମନ୍ତ୍ର କରିଲେ । ତାହା ଅଗ୍ନିଉଦ୍‌ଗୀରଣ ବନ୍ଦ କଲାନାହିଁ, କିନ୍ତୁ ଯାଦୁପାଇଁ ସେଥିରୁ ବାହାରୁଥିବା ଗନ୍ଧକକୁ ଅକାମୀ କରିଦେଲା । ଏହି ଆଗ୍ନେୟଗିରିଟି ଏତେ ଭୟଙ୍କର ଯେ ପାଖକୁ ଆସିବାକୁ କେହି ସାହସ କଲେନାହିଁ । ପମ୍ପେ ! ଖେଚଡ଼ ଡ୍ରାଗନ, ସାଙ୍ଗେ ସାଙ୍ଗେ ଫେରିଆସ । ପମ୍ପେ ଗୋଟିଏ ଲାଭା ସ୍ରୋତ ଉପରେ ଡିଆଁକୁଦା କରୁଥିଲା ଓ ଉପରର ଶୁଖିଲା ଖାଦ ଖୋଳପା ଭାଙ୍ଗି ତଳେଥିବା ଲାଲ ଟକଟକ ତରଳ ଲାଭା ବାହାର କରୁଥିଲା । ପମ୍ପେ ସେ ଲାଭାରୁ କିଛି ପିଇଦେଲା ଓ ଆହୁରି ବେଶୀ ଏଣେତେଣେ ଛଟାଛାଟି କଲା । ଚାରିଆଡ଼େ ଭୟଙ୍କର ଶବ୍ଦ ହେଉଥିଲା, ତେଣୁ ପମ୍ପେ ଲିକୀଙ୍କ କଥା ଶୁଣିପାରିଲା କି ନାହିଁ ତାହା ଠିକ କହିହେବ ନାହିଁ । କିନ୍ତୁ ସେ ଆମ ଆଡ଼କୁ ଆଦୌ ଧ୍ୟାନ ଦେଉନଥାଏ । ସେ ଆଗ ଚିତ୍ ହୋଇ ଗଡ଼ିଗଲା ଓ ପବନରେ

ଗୋଡ଼ ଛାଟିବାରେ ଲାଗିଲା । ସେ ଯେତେବେଳେ ଉଠିପଡ଼ିଲା ତା ଦେଣାରେ ଅଠାଳିଆ ଲାଭା ଲାଗିଯାଇଥିଲା । ଠିକ ବିରୁଡ଼ି ଦେହରେ ମହୁ ବୋଳିହେଲା ଭଳି ଅବସ୍ଥା । ତଥାପି ସେ ପାଉଁଶ ଗଦା ଉପରେ ଗଡ଼ିଗଲା ଓ ମୁଣ୍ଡ ତଳକୁ କରି ବାଷ୍ପ ବାହାରୁଥିବା ଗୋଟିଏ ଖାଡ ଭିତରକୁ ଡେଇଁ ପଡ଼ିଲା ।

ଶ୍ରୀ ଲିକୀ ତାଙ୍କ ମୁଦିକୁ ଛୁଉଁ ଛୁଉଁ ଅବ୍‌ଦୁଲ ମକ୍କର ଆସି ଆମ ପାଖରେ ପହଞ୍ଚିଗଲେ । ତାକୁ କହିଲେ, "ହେ ଅବ୍‌ଦୁଲ ମକ୍କର, ତୁମ କଥାରେ ନିଆଁରେ ରହୁଥିବା ଓ ନିଆଁ ଖାଉଥିବା ଏହି ଜୀବଟିକୁ ଆମ ସାଥିରେ ଆଣିଥିଲୁ । ଶାସ୍ତ୍ର କୁହେ ଯେ ଉତ୍ତମ ଉପଦେଶ ଦେଉଥିବା ବ୍ୟକ୍ତିକୁ ଫୁଲମାଳ ପିନ୍ଧାଯାଏ ଓ ଖରାପ ଉପଦେଷ୍ଟାକୁ ଗୋଟିଏ ଗଭୀର ଗର୍ତ୍ତରେ ପକାଇ ଦିଆଯାଏ । ତୁମପାଇଁ ସେଭଳି ଦୁର୍ଭାଗ୍ୟଜନକ ଘଟଣା ମୋ ହାତରେ ନ ଆସୁ । ତେଣୁ ତୁମେ ଏବେ ନିଆଁଭରା ଗାତକୁ ଡେଇଁ ମୋର ଅପରାଧୀ ଅନୁଚରକୁ ରକ୍ଷାକର । ଉଚ୍ଚ ତାପ ସହିପାରୁଥିବା ପିତ୍ତଳ ବା ଟଙ୍ଗଷ୍ଟାନ ପରି ଟାଣୁଆ ଧାତୁର ଚେନ୍‌ରେ ବାନ୍ଧି ତୁମେ ତାକୁ ମୋ ପାଖକୁ ଆଣ । କିନ୍ତୁ ତୁମେ ତାକୁ କିଛି ଶାସ୍ତି ଦେବନାହିଁ । କାରଣ ଲଢ଼େଇରେ ସେ ଅନେକ ସାହସିକତା ଦେଖାଇଛି । ଆମେ ବର୍ତ୍ତମାନ ଆଣ୍ଡ୍ରୋଜ ଦ୍ୱୀପ ଆଡ଼କୁ ଆଗୁଆ ଚାଲିଯାଉଛୁ ।"

ଅବ୍‌ଦୁଲ ମକ୍କର ନଇଁପଡ଼ି ଭକ୍ତି ଜଣାଇଲେ ଓ ପମ୍ପେର ପଛେ ପଛେ ଗାତ ଭିତରେ ପଶିଗଲେ । ଆମେ ଆଗ୍ନେୟଗିରିର ଧାରରେ ଚଢ଼ି ବାହାରି ଆସିଲୁ ଓ ପୁଣି ଗାଲିଚା ଉପରେ ଚଢ଼ି ସମୁଦ୍ର ଉପରେ ପଶ୍ଚିମ ଦିଗକୁ ଯାତ୍ରାକରି ଆଣ୍ଡ୍ରୋଜ ଚାଲିଲୁ । ଆମେ ଗୋଟିଏ ପ୍ରବାଳ ପାହାଡ଼ ପଛରେ ଥିବା ବାଲୁକାମୟ ଉପକୂଳରେ ଓହ୍ଲାଇଲୁ । କୂଳରୁ ପ୍ରାୟ ୨୦୦ ଗଜ ଦୂରରେ ଥିବା ପ୍ରବାଳ ପାଚେରୀ ପାଖକୁ ଆମେ ପହଁରିକରି ଗଲୁ । ପ୍ରବାଳ ଘେରରେ ରହିଥିବା ସମୁଦ୍ର ପୂରା ଶାନ୍ତ ଓ ଉଷୁମ ଥିଲା । କିନ୍ତୁ ତା'ର ବାହାରେ ସମୁଦ୍ରରେ ବଡ଼ ବଡ଼ ଲହରୀ ଉଠୁଥିଲା । ପ୍ରବାଳ ଘେରା ପାଣିରେ ଶୁଆ ପରି ସୁନ୍ଦର ସବୁଜରଙ୍ଗର ଟିକି ଟିକି ମାଛ ଓ ଉଜ୍ଜ୍ୱଳ ଲାଲ ସମୁଦ୍ରତାରା ଓ ଅନ୍ୟ ସାମୁଦ୍ରିକ ଜୀବ ଭେଳା ଭେଳା ହେଉଥା'ନ୍ତି । ଆମେ ସେଠାରେ ଅଧ ଘଣ୍ଟାଏ ମଉଜ କଲୁ । ଗୋଟିଏ କୁହୁକ ମଲମ ଟାଣ ଖରାରୁ ମୋତେ ରକ୍ଷାକଲା । ଆମେ ଫେରିଆସିଲା ବେଳକୁ ଅବ୍‌ଦୁଲ ମକ୍କର ସେଠାରେ ପମ୍ପେ ସହିତ ପହଞ୍ଚି ଯାଇଥିଲା । ପମ୍ପେ ଗୋଟିଏ ପିତ୍ତଳ ଚେନ୍‌ରେ ବନ୍ଧାହୋଇ ଅନୁତାପରେ ମନଦୁଃଖ କରି ବସିଥିଲା । ସମୁଦ୍ର କୂଳରେ ଆମେ ଚା'ପାନ କଲୁ ଓ ତା'ପରେ କୁହୁକ ଗାଲିଚାରେ ଉଡ଼ି ଇଂଲଣ୍ଡକୁ ଫେରିଚାଲିଲୁ । ଆମେ ବିସ୍କେ ଉପସାଗର ଉପରେ ଥିଲାବେଳେ ସୂର୍ଯ୍ୟ ବୁଡ଼ିଲା । ମୁଁ ମୋର ଗରମ ପୋଷାକ ପୁଣି ପିନ୍ଧି ପକାଇଲି ଓ ମିନିଟକ ଭିତରେ ଆମେ ମେଘମାଳା ଭେଦି ଲଣ୍ଡନ

ଆଡ଼କୁ ଖସିବାରେ ଲାଗିଲୁ ।

ଆମେ ଲିକୀଙ୍କ ଘରକୁ ଗୋଟିଏ କାଛ ଭିତର ଦେଇ ପଶିଲୁ, ମାତ୍ର ସେଥିରେ କିଛି କଣା ହେଲାନାହିଁ । ଯଦିଓ ଆଗରୁ ସେକଥା ମୁଁ ଜାଣିଥିଲି, ତଥାପି ତାହା ବଡ଼ ଅସ୍ୱାଭାବିକ ଲାଗିଲା । ମୁଁ ମାନୁଛି ଯେ ଏତେ କୁହୁକ ସତ୍ତ୍ୱେ ମୁଁ ଘଣ୍ଟାକୁ ନବେ ମାଇଲ ବେଗରେ ଗୋଟିଏ ଘରକାଛରେ ଧକ୍କା ଲାଗିବାକୁ ପସନ୍ଦ କରେନାହିଁ । ତେଣୁ ମୁଁ ପରାମର୍ଶ ଦେବି ଯେ ତୁମେ ଯଦି କେବେ କୁହୁକ ଗାଲିଚାରେ ବସି କୁଆଡ଼େ ଯାଉଛ, ତେବେ ଯାତ୍ରାର ଆରମ୍ଭ ଓ ଶେଷ ବେଳକୁ ନିଶ୍ଚୟ ଆଖି ବୁଜି ବସିବ । ଆମେ ପଶିକରି ଦେଖିଲୁ ଯେ ଘର ଭିତରେ ସବୁ ଠିକଠାକ ଅଛି, କିନ୍ତୁ ବାହାରେ କିଛି ଖସ୍‌ଖସ୍ ଶବ୍ଦ ହେଉଥିଲା । ଆମେ ଦୁଆର ଖୋଲିବାରୁ ଅତି ଶୋଚନୀୟ ଅବସ୍ଥାରେ ଜଣେ ଲୋକ ଭିତରକୁ ଆସିଲା । ତା'ର ନାକଟି ଭିଡ଼ିହୋଇ ପ୍ରାୟ ତିନିଫୁଟ ଲମ୍ବର ଖଣ୍ଡେ ଲାଲ ଦଉଡ଼ି ଭଳି ହୋଇଥିଲା ଓ ସେ ନାକର ଆଗଟି ଦୁଆର କଡ଼ାରେ ଲାଖି ରହିଥିଲା । ଅବ୍‌ଦୁଲ ମକ୍କରକୁ ଦେଖି ସେ ପଛକୁ ପଳାଇବାକୁ ଚେଷ୍ଟାକଲା ଓ ନାକଟି ଗୋଟିଏ ରବର ପରି ଲମ୍ବିଗଲା । କିନ୍ତୁ ସେ ବେଶି ଦୂରକୁ ଟାଣିହୋଇ ଯାଇପାରିଲା ନାହିଁ ।

ବେତାଳ ପଚାରିଲା, "ଆଜ୍ଞା, ସର୍ବଶକ୍ତିମାନ ଯାଦୁକର ! ଜୀବନ୍ତ ଅବସ୍ଥାରେ ଏହି ଚୋରର ଚମଡ଼ା ଉତାରି ଦେବା କି? ତାକୁ ଟିକି ଟିକି କରି କାଟି ତା'ର କଲିଜା ତା ଆଗରେ ଭାଜିବି କି?" ଲିକୀ କହିଲେ, "ହେ ଅବ୍‌ଦୁଲ ମକ୍କର, ତା'ର ସୌଭାଗ୍ୟକୁ ଏଭଳି ଦଣ୍ଡ ଇଂଲଣ୍ଡରେ ନିଷେଧ ହୋଇଛି । ତା' ପାଇଁ କଠୋର ଶାସ୍ତି ଦରକାର, କିନ୍ତୁ ଏତେ ନିର୍ଦ୍ଦୟ ହେବାନାହିଁ ।" ଚୋରଟିକୁ କହିଲେ, "ତୁମେ ଖୁବ୍ ଭାଗ୍ୟବାନ ଯେ ଆମେ ବେଶୀ ବେଳ ପାଇଁ ବାହାରକୁ ଯାଇନଥିଲୁ । କେବଳ ମୁଁ ହିଁ ବିନା ଟାଙ୍ଗିଆରେ ତୁମ ନାକକୁ କଡ଼ାରୁ ଅଲଗା କରିପାରିବି । ମୁଁ ଯଦି ବାଟରେ ମରିଯାଇଥା'ନ୍ତି, ଏଠାରୁ ତୁମେ ଜମା ମୁକୁଳିପାରି ନଥା'ନ୍ତ । ତିନି ହଜାର ବର୍ଷ ତଳେ ଥେସିଅସ୍ ଓ ପାଇରିଥସ୍ କିଛି କୁହୁକ ଅଠା ଉପରେ ବସିଯାଇଥିଲେ ଏବଂ ଆଜିଯାଏଁ ସେମାନେ ସେମିତି ଲାଖିରହିଛନ୍ତି । ମୁଁ ତୁମକୁ ଛାଡ଼ି ଦେଇଛି, କାରଣ ତୁମର ଚେହେରା ମୋତେ ଭଲ ଲାଗୁନାହିଁ । ତୁମର ମୁହଁ ଯଦି ସୁନ୍ଦର ହୋଇଥା'ନ୍ତା ତେବେ ମୁଁ ତୁମକୁ ଗୋଟିଏ ଅଳଙ୍କାର ଭାବରେ ରଖିଥା'ନ୍ତି । ତୁମେ ମୂର୍ଖ, ନୁହଁ କି? ମୁଁ କହିବାକୁ ଚାହେଁନାହିଁ ଯେ ଜଣେ ଖରାପ ମଣିଷ, କିନ୍ତୁ ତମେ ନିଶ୍ଚୟ ବୋକା । ନଚେତ ତୁମେ ସିନ୍ଧି ଚୋରି ଭଳି ଅଳ୍ପ ରୋଜଗାରର ପେଷା ଧରୁନଥା'ନ୍ତ । ସେ ଯାହାହେଲା ହେଉ, କିନ୍ତୁ ଆଗକୁ ତୁମେ ଆଉ ଚୋରିକରି ପାରିବନାହିଁ । ତୁମେ ଯଦି ପୁଣି କେବେ କେଉଁଠି ଚୋରି କରିବାକୁ ଯିବ, ସେ ଘର ମୋ କୁହୁକ ଘର ଭଳି ନ ହେଲେ ବି ତୁମ ନାକ ଏମିତି ଲାଖି ରହିବ । ଆଉ

ସେମାନେ ତୁମକୁ କେବଳ ଗୋଟିଏ କୁରାଢ଼ୀରେ କାଟିକରି ଅଲଗା କରିପାରିବେ । ଏହି ଅଗ୍ନିମୟ ଡ୍ରାଗନକୁ ଦେଖୁଛ ? ମୁଁ ଛାଡ଼ିଦେଲା ମାତ୍ରେ ତୁମେ ଯଦି ଦଉଡ଼ି ନ ପଳାଇବ ତେବେ ମୁଁ ତାକୁ ତୁମ ପଛରେ ଲଗାଇଦେବି । ତେଣୁ ମୋତେ ଧନ୍ୟବାଦ ଦେବାକୁ ବି ଅଟକିବ ନାହିଁ ।" ପମ୍ପେ ସେତେବେଳେ ତା'ର ଟଙ୍ଗଷ୍ଟନ୍ ଚେନ୍‌କୁ ଭିଡ଼ିବାରେ ଲାଗିଥାଏ । ତେଣୁ ଚୋରର ନାକଟି କବାଟରୁ ଖସିବା ମାତ୍ରେ ତାହା ଛୋଟ ହେବା ପୂର୍ବରୁ ଲୋକଟି ଜୋରରେ ପାହାଚ ଡେଇଁ ପଳାଇଲା । ମୁଁ ଡରିଗଲି ଯେ ସିଡ଼ିରେ ପଡ଼ି ତା'ର ବେକ ଭାଙ୍ଗିଯିବ ।

ଲିକୀ କହିଲେ, "ମୁଁ ଭାରି ଦୁଃଖିତ ଯେ ମୁଁ ତାକୁ ଛାଡ଼ିଦେଉଛି । କାରଣ ସେ ଶହେ ଗଜ ଦୌଡ଼ରେ ବେଶ୍ ଦକ୍ଷ ଜଣାପଡୁଛି । ପମ୍ପେକୁ ତା ପଛରେ ଲଗାଇ ଅଭ୍ୟାସ କରାଇଥିଲେ ସେ ନିଶ୍ଚୟ ଗୋଟିଏ ଚାମ୍ପିଅନ୍ ହୋଇପାରିଥା'ନ୍ତା । ବର୍ତ୍ତମାନ ଆପଣ ଯଦି ମୋତେ କ୍ଷମା କରିବେ, ତେବେ ରାତ୍ରିଭୋଜନ ଆଗରୁ ମୁଁ ଗୋଟିଏ ସଇତାନ ତିଆରି କରିବି । କାରଣ କାଲି ମୋତେ ଜଣେ ବଦମାସ ରାକ୍ଷସକୁ ସାବାଡ କରିବାକୁ ପଡ଼ିବ ଏବଂ ସେଥିପାଇଁ ମୋର ସାହାଯ୍ୟ ଦରକାର । ସାସାବନ୍‌ସମ୍ ନାମକ ଏହି ରାକ୍ଷସଟି ବହୁତ ଖରାପ । ସେ ଜଙ୍ଗଲ ରାସ୍ତାରେ ଗଛଡାଳରୁ ଝୁଲୁଥାଏ ଓ କୃଷ୍ଣକାୟ ଲୋକମାନେ ସେ ବାଟରେ ଗଲାବେଳେ ତାଙ୍କ ବେକକୁ ସେ ତା'ର ପାଦର ଆଙ୍ଗୁଠିରେ ଗୁଡ଼ାଇ ଧରିପକାଏ । ମାଙ୍କଡ଼ଙ୍କ ଭଳି ସେ ଗୋଡ଼ର ବୁଢ଼ା ଆଙ୍ଗୁଠିକୁ ହାତର ବୁଢ଼ା ଆଙ୍ଗୁଠି ଭଳି ବ୍ୟବହାର କରିପାରେ । ଅବଶ୍ୟ ସେ ଗୋରା ଲୋକଙ୍କୁ ଧରେନାହିଁ । କାରଣ ସେମାନେ ତା'ର ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ନାହିଁ, କିନ୍ତୁ କୃଷ୍ଣକାୟ ଲୋକମାନେ କରନ୍ତି । ସାଧାରଣ ସଇତାନଙ୍କ ତୁଳନାରେ ମୋର ସଇତାନ ବନ୍ଧୁ ଜଣକ ବେଶ୍ ଭଲ । କିନ୍ତୁ ଆପଣଙ୍କୁ ସେ ଅତି ଭୟଙ୍କର ଲାଗିବ । ଯଦି କିଛି ମନେ ନ କରିବେ, ମୁଁ ଆପଣଙ୍କଠାରୁ ବିଦାୟ ନେଉଛି । ସେହି ବେତାଳର ମୁକାବିଲାରେ ତୁମର ସାହାଯ୍ୟ ପାଇଁ ବହୁତ ଧନ୍ୟବାଦ । ଏବେ ଗାଲିଚାରେ କୁଆଡ଼େ ନେବି କି ?"

ମୁଁ କହିଲି, "ନା, ବହୁ ଧନ୍ୟବାଦ । ଆଜିର ଅଭିଜ୍ଞତା ପରେ ବସ୍‌ରେ ଯିବାଟା ମୋତେ ଏକ ଦୁଃସାହସିକ ଯାତ୍ରା ପରି ଲାଗିବ । ମୁଁ ଖୁବ୍ ମଜାରେ ଆଜି କଟାଇଲି । ମନେ ହେଉଛି ଯେମିତି ମୁଁ ମାସକ ପାଇଁ ଛୁଟିରେ ଯାଇଥିଲି । ମୁଁ ପୂରା ସତେଜ ହୋଇ ସୋମବାର ଦିନ କାର୍ଯ୍ୟରେ ଯୋଗଦେବି ।"

ସୋମବାର ଦିନ ମୁଁ ନୂଆ ପ୍ରକାରର ହଳଦିଆ ଗୋଲାପ ଓ ବିରାଡ଼ି କିପରି ବାହାର କରିବାକୁ ହେବ ସେ ସମ୍ପର୍କରେ ହିସାବ କରିବାରେ ଲାଗିଯାଇଥିଲି । କାରଣ ତାହା ଥିଲା ମୋର କାର୍ଯ୍ୟ । ଏହା ମଧ୍ୟ ଲିକୀଙ୍କର କାର୍ଯ୍ୟ ପରି ଅଜବ !



ଶ୍ରୀ ଲିକୀଙ୍କର ଭୋଜି

# ଶ୍ରୀ ଲିକୀଙ୍କର ଭୋଜି

ଆମର ପୃଥିବୀ ପରିକ୍ରମା ପରେ ମୁଁ ଲିକୀଙ୍କୁ ତିନିମାସ ଧରି ଦେଖିନଥିଲି । ଅବଶ୍ୟ ତାଙ୍କର ଫୋନ୍ ନଥିଲା, ନ ହେଲେ ମୁଁ ତାଙ୍କୁ ଫୋନ୍ କରିଥା'ନ୍ତି । ତାଙ୍କୁ ଦେଖା କରିବାକୁ ମୁଁ ଦୁଇଥର ଯାଇଥିଲି । ଥରେ ମୁଁ ଦ୍ୱାର ମୁହଁରେ ଗୋଟିଏ ଫଳକରେ ଲେଖା ହୋଇଥିବାର ଦେଖିଲି ।

"ନୋଆହ ଗୋଟୁବେଡ
କୃତ୍ରିମ ଗୋଡ଼ନଖ ନିର୍ମାତା
କେବଳ ପାଇକାରୀ ବିକ୍ରି କରାଯାଏ ।"

ମୁଁ ଅନୁମାନ କଲି ଯେ ଲୋକମାନଙ୍କୁ ଦୂରେଇ ରଖିବା ପାଇଁ ଏହା ଏକ ମଜା ଚାଲ । କାରଣ ଭୂଇଁତଳ ରେଳରେ ଗଲାବେଳେ ଗହଳିର ଦଳାଚକଟାରେ ଜଣେ ଲୋକର ଗୋଡ଼ନଖ ନଷ୍ଟ ହୋଇଗଲେ ସେ ହୁଏତ ୫ ବା ୧୦ଟି କିଣିପାରେ, ମାତ୍ର ଶହେ ସେଟ୍ କିଏ କାହିଁକି କିଣିବ ? ଏହାଛଡ଼ା କବାଟରେ ଆଉ ଏକ ବିଜ୍ଞପ୍ତି ରହିଥିଲା, "ଏ ସପ୍ତାହ ବୁଧବାର ପର୍ଯ୍ୟନ୍ତ ବାହାରକୁ ଯାଇଛି ।" କବାଟରେ ଚିଠି ବାକ୍ସଟିଏ ବି ନଥିଲା । ତା'ପର ଥରକୁ ଗଲାବେଳକୁ ମୁଁ ଦେଖିଲି ଯେ ଯେଉଁଠି ଦୁଆର ରହିବା କଥା ସେଠାରେ ଗୋଟିଏ ଇଟା କାନ୍ଥ ଠିଆହୋଇଛି । ତା'ପରେ ମୁଁ ଆଉ ଯାଇନଥିଲି ।

ପ୍ରାୟ ମାର୍ଚ୍ଚ ଶେଷରେ ମୁଁ ଦିନେ ରାତିରେ ଶୋଇବା ପୂର୍ବରୁ ଗାଧୁଆ କୁଣ୍ଡରେ ବସିଥିଲି ଓ ଗରମ ପାଣି ଭରି କରୁଥିଲି । ଏଭଳି କଲେ ବ୍ୟବହାର ପାଇଁ ପାଣି ଖୁବ୍ ଗରମ ନଥାଏ ଓ ବେଶୀ ସମୟ ପାଇଁ ଗରମ ରହିଥାଏ । ମାତ୍ର ମୁଁ ଆଶ୍ଚର୍ଯ୍ୟ ହେଲି ଯେତେବେଳେ ପାଣିକଳରୁ ଗୋଟିଏ ସୁନେଲୀମାଛ ବାହାରି ପଡ଼ିଲା । କାରଣ ସାଧାରଣ ସୁନେଲୀମାଛ ମଣିଷକୁ ସୁହାଉଥିବା ଉଷୁମ ପାଣିରେ ବି ମରିଯା'ନ୍ତି । ମୁଁ ଅଧିକ ଅବାକ ହେଲି ଯେତେବେଳେ ମୁଁ ଦେଖିଲି ଯେ ସେ ପୁଣି ଗୋଟିଏ ପାନାମା ଟୋପି ପିନ୍ଧିଛି । ଟୋପିଟି କେମିତି ସେ ମାଛର ମୁଣ୍ଡରେ ଲାଗି ରହିଥିଲା, ତାହା ମୁଁ ଜାଣିପାରିଲି ନାହିଁ ।

କିନ୍ତୁ ମୁଁ ପ୍ରାୟ କୁଣ୍ଡ ବାହାରକୁ ଡେଇଁ ପଡ଼ିଲି ଯେତେବେଳେ ସେ ପାଣିରୁ ମୁଣ୍ଡ ବାହାର କଲା ଓ ଟୋପି କାଢ଼ି ମୋତେ ସ୍ୱାଗତ କଲା । ତା'ର ଡାହାଣ ଡେଣାର ଦୁଇଟି କଣ୍ଟାରେ ଟୋପିକୁ କାଢ଼ି ଧରିଲା ଓ ସରୁ ଚେଁ ଚେଁଇଁଆ ସ୍ୱରରେ କଥା କହିବାକୁ ଆରମ୍ଭ କଲା ।

ସେ କହିଲା, "ସୁସନ୍ଧ୍ୟା! ମୁଁ ଶ୍ରୀ ଲିକୀଙ୍କ ପାଖରୁ ଆସିଛି । ସେ ମୋତେ ଆପଣଙ୍କ ପାଇଁ ଗୋଟିଏ ବାର୍ତ୍ତା ଦେଇଛନ୍ତି । ଏ ସପ୍ତାହର ଶନିବାର ଦିନ ଚାରିଟା ବେଳେ ତାଙ୍କ ସହିତ ଚା'ପାନ କରିବାକୁ ଆସିପାରିବେ କି? ସେ ଗୋଟିଏ ଭୋଜି ଦେଉଛନ୍ତି । ଆପଣ ଯେତେବେଳ ଯାଏଁ ଚାହିଁବେ ରହିପାରିବେ । ଏହା ଏକ କୌତୁକିଆ ପୋଷାକ ପିନ୍ଧା ଭୋଜି ହେବ, କିନ୍ତୁ ପୋଷାକ ସିଏ ଯୋଗାଇବେ । ସେ ଚାହାନ୍ତି, ଆପଣ ଆସିବେ । କାରଣ ଏହା ଏକ ସ୍ୱତନ୍ତ୍ର ଧରଣର ଭୋଜି ହେବ ।"

ମୁଁ କହିଲି, "ମିନିଟିଏ ଅପେକ୍ଷା କର । ମୁଁ ମୋର ମେଜିକ୍ ଡାଏରୀ ଦେଖୁଛି । ତୁମକୁ ଏଠି ଠିକ ଲାଗୁଛି ତ? ପାଣିର ଉଷ୍ଣତା ଓ ସାବୁନ ଯୋଗୁଁ ତୁମକୁ ଅସୁବିଧା ହେଉନାହିଁ? ନହେଲେ ବେସିନ୍‌ରେ ତୁମପାଇଁ କିଛି ଥଣ୍ଡା ପାଣି ଭରିଦେବି କି?"

"ଆପଣଙ୍କୁ ଧନ୍ୟବାଦ", ମାଛ ଉତ୍ତର ଦେଲା, "ମୁଁ ଏଠାରେ ଖୁବ୍ ଆରାମରେ ଅଛି । ମୁଁ ସାବୁନ ଓ ଗରମରେ ଅଭ୍ୟସ୍ତ । କାରଣ ମୁଁ ଏକ ସାଧାରଣ ମାଛ ନୁହେଁ । ମୁଁ ନିଉଜିଲାଣ୍ଡର ଏକ ଝରଣାରେ ରହେ । ସେଠାରେ ପାଣି ଭାରି ଗରମ । ଆପଣଙ୍କ ଗାଧୁଆ ଘର ପାଣିଠାରୁ ମଧ୍ୟ ସେଥିରେ ଅଧିକ ସାବୁନ ଥାଏ । କାରଣ ଗରମ ବାଷ୍ପ ଓ ପାଣିର ଫୁଆରା ଉଠାଇବାକୁ ଲୋକମାନେ ସେଥିରେ ସାବୁନ ଖଣ୍ଡମାନ ପକାନ୍ତି । ତେଣୁ ମୁଁ ପୂରା ଠିକ ଅଛି ।"

ମୁଁ ମୋର ଡାଏରୀକୁ ଦେଖିଲି ଓ କହିଲି, "ଲିକୀଙ୍କୁ ମୋର ବହୁତ ଧନ୍ୟବାଦ ଜଣାଇଦେବ । ମୁଁ ଭୋଜିରେ ଯୋଗଦେବାରେ ଆନନ୍ଦିତ ହେବି ।" ଗରମ ପାଣିର କଳଟି ପୁଣି ଖୋଲିଦେବାକୁ ସେ କହିଲା ଏବଂ ମୁଁ ତାହା କରିବା ମାତ୍ରେ ସେ ଜଳପ୍ରପାତରେ ସାଲମନ ମାଛ ପରି ଉପରକୁ କୁଦାମାରି ପାଣିକଳ ଭିତରେ ପଶି ଅଦୃଶ୍ୟ ହୋଇଗଲା !

ତା'ପର ସପ୍ତାହର ଶନିବାର ଦିନ ଚାରିଟା ବାଜିବାକୁ ଦୁଇମିନିଟ ଥିଲା, ଶ୍ରୀ ଲିକୀଙ୍କ ଘରେ ପହଞ୍ଚିଲି । ପାହାଚ ଉପରେ ମୁଁ ପ୍ରଥମେ ଖରାପ ପୋଷାକ ପିନ୍ଧିଥିବା ଗୋଟିଏ ପିଲାକୁ ଦେଖିଲି ଓ ଆମେ ଦୁହେଁ ସାଙ୍ଗ ହୋଇ ଭିତରକୁ ଗଲୁ । ସେଦିନ ସେ ଦୁଆରଟି ଠିକ ଥିଲା । ଲିକୀ ମୋତେ ସ୍ୱାଗତ କଲେ । ସେ ଠିକ ଗୋଟିଏ ଯାଦୁକର ପୋଷାକ ପିନ୍ଧିଥିଲେ । ଏକ ମସ୍ତବଡ଼ ଗୋଜିଆ ଟୋପି ଓ ଗୋଟିଏ ଲମ୍ବା ଢିଲା ପୋଷାକ ପିନ୍ଧିଥିଲେ । ମୋତେ ସେ ସାଙ୍ଗରେ ଆସିଥିବା ପିଲାଟି ସହିତ ପରିଚୟ କରାଇଦେଲେ ଓ କହିଲେ ତା'ର ନାମ ହେଲା ଶ୍ରୀ ଜନ ରବିନ୍‌ସନ । ତାହା ମୋର ପସନ୍ଦ ହେଲା,

କାରଣ ମୁଁ ଭାବେ ଯେ ଜନୀ ରବିନ୍‌ସନ ବା ତରୁଣ ରବିନ୍‌ସନ ଭାବରେ ପରିଚୟ କରାଇବାଟା ଟିକିଏ ରୁକ୍ଷ । ଯଦି ପିଲାମାନେ ଠିକ ଭାବରେ ଆଚରଣ କରିବେ, ତୁମେ ସେମାନଙ୍କ ପ୍ରତି ବୟସ୍କତୁଲ୍ୟ ଭଦ୍ରାମୀ ଦେଖାଇବା ଉଚିତ ହେବ ।

"ଏ ହେଉଛନ୍ତି, ଶ୍ରୀ ତବ୍‌ସ୍, ଜଣେ ପଦାର୍ଥ ବିଜ୍ଞାନୀ", କହି ସେ ଜଣେ ଲାଲମୁହାଁ ମୋଟା ଓ ଗେଡ଼ା ଲୋକଙ୍କ ସାଥିରେ ଚିହ୍ନା କରିଦେଲେ । ତାଙ୍କ ମୁଣ୍ଡରେ ଆଦୌ ବାଳ ନଥିଲା ମାତ୍ର ଚିବୁକରେ ବେଶ୍ କିଛି ଥିଲା । ଲିକୀ କହିଚାଲିଲେ, "ଅନ୍ତତଃ ଆଗରୁ ସେ ଜଣେ ପଦାର୍ଥ ବିଜ୍ଞାନୀ ଥିଲେ । ଏବେ କିନ୍ତୁ ସେ ବେକାର । ସେ ରେଳଗାଡ଼ିରେ ଅଧିକ ଓଜନର ଜିନିଷ ନେଇ ବର୍ଷକୁ ତିନିହଜାର ପାଉଣ୍ଡ ଅର୍ଜନ କରୁଥିଲେ ।"

"କ'ଣ କହିଲେ ?"

"ଅଧିକ ମାଲ ! ସାଧାରଣ ଲୋକେ ଅଧିକ ମାଲ ପାଇଁ ରେଲ ସଂସ୍ଥାକୁ ଅଧିକ ଭଡ଼ା ଦିଅନ୍ତି । ମାତ୍ର ଏଠାରେ ରେଲ ସଂସ୍ଥା ତାଙ୍କ ଜିନିଷ ବୋହିଲାବେଳେ ତାଙ୍କୁ ଟଙ୍କା ଦେଉଥିଲା । କାରଣ ତାହାର ଓଜନ ଶୂନଠାରୁ ବି କମ୍ ହେଉଥିଲା, ବେଲୁନ୍‌ଟିଏ ପରି । ତବ୍‌ସ୍‌ଙ୍କର କେତେକ ସ୍ୱତନ୍ତ୍ର ବ୍ୟାଗ ଥିଲା । ଯେତେବେଳେ ସେ ଷ୍ଟେସନରେ ଓଜନ ମାପକ ଯନ୍ତ୍ର ଉପରେ ତାହା ରଖନ୍ତି, ସେ ଗୋଟିଏ ବୋତାମ ଚିପି ଦିଅନ୍ତି । ଏହା ଫଳରେ ମୁଣିରେ ଉଦ୍‌ଜାନ ବାଷ୍ପ ଭରିଯାଏ ଓ ତାହା ଉପରକୁ ଟାଣିହୁଏ ।"

"ତେବେ ଏହା ପୂରା ଉପରକୁ ଉଡ଼ିଯାଏ ନାହିଁ କାହିଁକି ?"

"ଆରେ ଏଇଠି ତ ତବ୍‌ସ୍ ବୁଦ୍ଧିଆ କାମ କରନ୍ତି । ବାହାରୁଥିବା ବାଷ୍ପ ବୈଦ୍ୟୁତିକ ଚୁମ୍ବକ ପରି କାମ କରେ ଓ ଓଜନ ମାପନ ଯନ୍ତ୍ରର ଲୁହା ଚଟାଣକୁ ଉପରକୁ ଟାଣିନିଏ । ଫଳରେ ସେ ଯେତେ ଓଜନ ଲଦିଲେ ମଧ୍ୟ ଯନ୍ତ୍ରରେ ଶୂନ ତଳକୁ ରହେ ଓ ତାକୁ ଶୂନକୁ ଆଣିବାପାଇଁ କିଛି ବଟକରା ଥୋଇବାକୁ ହୁଏ । ଯଦି ତୁମର ଗୋଟିଏ ବ୍ୟାଗ ଶହେ କେଜି ହେବା ଉଚିତ, ମାତ୍ର ଓଜନ କଲେ ଅଧିକ ହୁଏ ରେଳ ସଂସ୍ଥାକୁ କମ୍ପାନୀକୁ ତୁମେ ଅଧିକ ଭଡ଼ା ଦେବ । ଯଦି ଓଜନ କମିଲା, ତେବେ ସେମାନେ ତୁମକୁ ଟଙ୍କା ଦେବାକୁ ବାଧ୍ୟହେବେ । ଗ୍ରାଣ୍ଡ ନର୍ଥ ସ୍କଟଲ୍ୟାଣ୍ଡ ରେଲୱେଜ ଯାହା ଆବରଦିନ ଯାଏଁ ଯାଉଥିଲା, ତାଙ୍କୁ ଟଙ୍କା ଦେବାକୁ ମନା କଲା । ତେଣୁ ସେ ତା' ବିରୁଦ୍ଧରେ ମୋକଦ୍ଦମା କଲେ ଏବଂ ଲଢ଼ି ଲଢ଼ି ଶେଷରେ ହାଉସ୍ ଅଫ୍ ଲର୍ଡସ୍ ତାଙ୍କ ସପକ୍ଷରେ ରାୟ ଦେଲା । ତେଣୁ ତାଙ୍କୁ ସେ କମ୍ପାନୀ ଅଧ ପାଉଣ୍ଡ ଦେୟ ଓ ୯୫,୦୦୦ ପାଉଣ୍ଡ ଓକିଲ ଖର୍ଚ୍ଚ ପାଇଁ ଦେଲା । ଏମିତି କରି ସେ ବର୍ଷ ବର୍ଷ ଧରି ରୋଜଗାର କରିଚାଲିଲେ । ଶେଷରେ ପାର୍ଲାମେଣ୍ଟରେ ଏକ ସ୍ୱତନ୍ତ୍ର ଆଇନ ପାସ୍ କରାଇ ତାଙ୍କର ଏପରି କାମକୁ ବନ୍ଦ କରାଗଲା । ତେଣୁ ମେ ଏବେ ବେକାର । ତେବେ ସିନେମାରୁ ପଇସା ରୋଜଗାର କରିବାର ଏକ ଯୋଜନା ସେ

କରୁଛନ୍ତି । ମୁଁ ଭାବେ ସେ ଜଣେ ଯାଦୁକର ହେବା ଉଚିତ ଥିଲା ।

"ଏ ହେଉଛନ୍ତି ମୁଖ୍ୟ ଦେବଦୂତ ରାଫେଲ୍ । ଆମେ ଏଠାରେ ଯାହା କିଛି କରିବୁ, ସେଥିରେ କାଳେ କେହି ଅତିଥି ଡରିଯିବେ, ସେଥିପାଇଁ ସେ ଆସିଛନ୍ତି । ପ୍ରଧାନ ଦେବଦୂତ ଏଠାରେ ରହିଥିଲେ ସମସ୍ତେ ଜାଣିବେ ଯେ ଡରିବାର କିଛି ନାହିଁ । ମୁଁ ତାଙ୍କୁ ଏଠାକୁ ଆସି କଷ୍ଟ ନେବାକୁ ଚାହିଁ ନଥା'ନ୍ତି । ମାତ୍ର ଜଣେ ଦେବଦୂତ ଏକ ସମୟରେ ବିଭିନ୍ନ ସ୍ଥାନରେ ରହିପାରନ୍ତି । ମୁଁ ତେଣୁ ତାଙ୍କ କାର୍ଯ୍ୟ ବା ଖେଳରେ କିଛି ବାଧା ଆଣୁନାହିଁ । ଏବେ ସେ ବାଦଦାଦ, ଟୋପେକା, ସ୍ଲିଟ, ହୁଇଫ୍ଲେଟ, ସେମିପାଲାଟିନ୍‌ସ୍କ, ସଟଭିଲ୍ ଓ ମୁଜ ଜ' ଆଦି ଜାଗାରେ ଅନାଥ ଓ ବିଧବାମାନଙ୍କୁ ସାହାଯ୍ୟ କରିବାରେ ଲାଗିଛନ୍ତି । ଏହାଛଡ଼ା ଦୁର୍ଗମ ଗୋଟିଏ ସଇତାନ ଦଳ ବିପକ୍ଷରେ ୱିକେଟ ରକ୍ଷକ ଭାବରେ ଖେଳୁଛନ୍ତି ଏବଂ ବ୍ରାଜିଲ୍‌ର ଜଙ୍ଗଲରେ ପୁଷ୍ପାଳୀ ସଂଗ୍ରହ କରୁଛନ୍ତି ।"

"ମୁଁ ଆପଣଙ୍କୁ ଦେଖି ଖୁବ୍ ଗର୍ବ ଅନୁଭବ କରୁଛି", ମୁଁ କହିଲି । "ମୁଁ ସେମିତି ବେଶୀ କିଛି କରୁନାହିଁ । ଶ୍ରୀ ଲିକୀ ଭଦ୍ରାମୀ ଦୃଷ୍ଟିରୁ ମୋ ବିଷୟରେ ଏତେ କଥା କହୁଛନ୍ତି । ତାଙ୍କର ଭୋଜିରେ ଯୋଗ ଦେବାକୁ ମୁଁ ସବୁବେଳେ ଆଗ୍ରହୀ । ତା'ଛଡ଼ା, ମୁଁ ମୋର ପ୍ରକୃତ ଦେବଦୂତ ରୂପରେ ଆସିବାକୁ ଭଲ ପାଏ । ଲମ୍ବା କୋଟ୍ ଭିତରେ ଲାଞ୍ଜକୁ ଲୁଚାଇ ଆସିବାକୁ ମୋତେ ଭଲ ଲାଗେନାହିଁ । ମୋଭଳି ପରଯୁକ୍ତ ଲାଞ୍ଜକୁ ସେଭଳି ଘୋଡ଼ାଇବାରେ ବଡ଼ ଅସୁବିଧା ହୁଏ । ଅବଶ୍ୟ ଅବ୍‌ଦୁଲ୍ଲ ମକ୍କରର ଚମଡ଼ିଆ ଡେଣା ଥିଲେ ତାହା ଚଳିଯିବ । ଏହାର ମାନେ ନୁହେଁ ଯେ ମୁଁ ତା' ସାଥିରେ ମୋର ଡେଣା ବଦଳ କରିବାକୁ ଚାହିଁବି ।"

ଏମିତି ଅନେକ ଅତିଥି ଆସିଲେ । ଆଉ ତିନିଜଣ ବାଳକ ଓ ଚାରିଜଣ ବାଳିକା ଥିଲେ । ଚୀନା ଲୋକ ପରି ଦିଶୁଥିବା ଜଣେ ମଣିଷ ହଳଦିଆ ପଶମ ପୋଷାକ ପିନ୍ଧିକରି ଛାତ ଭିତର ଦେଇ ଆସିଲେ । କୋଇଲା ଯୋଗାଉଥିବା ମହିଳା ଜଣେ ଖୁବ୍ ଚକଚକିଆ ପୋଷାକ ପିନ୍ଧିଥିଲେ । ସେ ଛୁଟିଦିନରେ ଚଳଚ୍ଚିତ୍ର ଅଭିନେତ୍ରୀ ହୁଅନ୍ତି । ଜଣେ ସଇତାନ ଚଟାଣ ଦେଇ ଆସିଥିଲେ । ନୌବାହିନୀର ପୋତ "ଫ୍ୟୁରିଅସ"ରୁ ଜଣେ ନାବିକ ତାଙ୍କର ପେଶାଦାର ପୋଷାକ ପିନ୍ଧିଥିଲେ । ସଇତାନ ଜଣକ ଗୋଟିଏ ଧୂଷର ଟୋପି ଓ ଫ୍ରକ୍ କୋଟ୍ ପିନ୍ଧି ଆସ୍‌କଟ୍‌କୁ ଯାଉଥିବା ଜଣେ ମାର୍ଜିତ ଭଦ୍ରଲୋକଙ୍କ ପରି ଦେଖାଯାଉଥିଲେ । କିନ୍ତୁ ତା'ର ଶିଙ୍ଗରୁ ଜାଣିହେଉଥିଲା ଯେ ସେ ଗୋଟିଏ ସଇତାନ । ଟୋପି ବାହାର କରୁଥିଲା ବେଳେ ମୁଁ ତା'ର ଶିଙ୍ଗକୁ ଦେଖିଥିଲି । ନିଜ ଶିଙ୍ଗକୁ ଲୁଚାଇବା ପାଇଁ ସଇତାନମାନେ ସବୁବେଳେ ଡେଙ୍ଗା ଟୋପି ପିନ୍ଧନ୍ତି । ତା'ର ଲାଙ୍ଗୁଡ଼ଟି ମଧ୍ୟ ପ୍ୟାଣ୍ଟର ଗୋଟିଏ କଣାରେ ବାହାରି ରହିଥିଲା । ସେ ଓ ଦେବଦୂତ ନହସି ପରସ୍ପର ଆଗରେ



ନଇଁ ପଡ଼ିଲେ । ମାତ୍ର ହାତ ମିଳାଇଲେ ନାହିଁ । ସଇତାନର ଲାଙ୍ଗୁଡ଼ ଅଗ ବିରାଡ଼ି ଲାଙ୍ଗୁଡ଼ ପରି ବଙ୍କା ହୋଇଥିଲା । ମୁଁ ଭାବୁଛି ଯେ ସେ ସ୍ୱର୍ଗଦୂତ ପ୍ରତି ଖରାପ ବ୍ୟବହାର କରିବାକୁ ଚାହିଁଥା'ନ୍ତା, ମାତ୍ର ଭଦ୍ରାମୀ ଦୃଷ୍ଟିରୁ ଲିକୀଙ୍କ ଆଗରେ ସେ ତାହା କରିଲା ନାହିଁ । ଲୋକମାନେ ଯେମିତି ଆସିବାକୁ ଲାଗିଲେ ମୁଁ ଦେଖିଲି କୋଠରୀର ଆକାର ମଧ୍ୟ ବଢ଼ିଚାଲିଲା । ଦୁଇଟି କାନ୍ଥ ପରସ୍ପର ଠାରୁ ଦୂରେଇ ଯାଉଥିଲେ । ସୁନା କୁଣ୍ଡରେ ଲାଗିଥିବା ଗୋଟିଏ ବିଚିତ୍ର ଗଛର ଡାଳ ଅଗରେ ଚଉକିମାନ ଫଳୁଥିଲା ଓ ପାଚିକରି ଝଡ଼ିପଡୁଥିଲା । ଚଉକିଗଛ ଛଡ଼ା ସେହି ଘରେ ଗୋଟିଏ ଚକୋଲେଟଗଛ ଓ ଗୋଟିଏ ଟଫିଗଛ ମଧ୍ୟ ବଢୁଥିଗଲା । ତାଙ୍କର ପାଖଦେଇ କେହି ଗଲାବେଳେ ସେହିଗଛରୁ ମିଠାଭରା ଡାଳ ତାଙ୍କ ଆଡ଼କୁ ବଢ଼ିଯାଉଥିଲା ।

ଶ୍ରୀ ଲିକୀ କହିଲେ, "ଆଚ୍ଛା, ମୁଁ ଭାବୁଛି ସମସ୍ତେ ପହଞ୍ଚି ଗଲେଣି । ଆପଣ ଏବେ ଠିକ କରନ୍ତୁ ଭୋଜି ପାଇଁ ଆପଣ କେଉଁ ବେଶ ହେବାପାଇଁ ଚାହୁଁଛନ୍ତି । ଆପଣ ଯାହା ହେବାକୁ ଚାହିଁବେ ତାହା ହୋଇପାରିବେ । କେବଳ ଆପଣମାନଙ୍କର ଆକାର ଯୁକ୍ତିଯୁକ୍ତ ହେବା ଉଚିତ । ମୋ କହିବା କଥା ହେଉଛି ଯେ ଆପଣ ଚାହିଁଲେ ଏଭରେଷ୍ଟ ଶୃଙ୍ଗ ହୋଇପାରିବେ । ମାତ୍ର ୬ଫୁଟରୁ ଅଧିକ ଉଚ୍ଚ ହେବେନାହିଁ । ନଚେତ ଆପଣ ଅନ୍ୟମାନଙ୍କୁ ଦଳି ପକାଇବେ । ଯଦି ତାଆଁଶ ପରି କୀଟ ହେବାକୁ ଚାହିଁଲେ ଅନ୍ତତଃ ଗୋଟିଏ ମେଣ୍ଢା ଆକାରର ହେବେ, ନଚେତ ଆପଣ ଚକଟି ହୋଇଯିବେ ବା ହଜିଯିବେ । ୧୦ ଫୁଟରୁ ଅଧିକ ଉଚ୍ଚକୁ ବି ଡେଇଁବେ ନାହିଁ, କାରଣ ଛାତରେ ଧକ୍କା ଖାଇବେ ।

"ମହାଶୟ, ଅନୁଗ୍ରହ କରି ମୋତେ ଏକ ହାତୀ କରିଦିଅନ୍ତୁ ।" ଜନ୍ ରବିନ୍‌ସନ୍ କହିଲେ । ଲିକୀ କହିଲେ, "ଏତ ସହଜ କଥା ।" ସେ ତାଙ୍କ ଯାଦୁବାଡ଼ିକୁ ବୁଲାଇ ତାଙ୍କୁ ଟଟୁଘୋଡ଼ା ଆକାରର ଏକ ହାତୀ କରିଦେଲେ । ଅବଶ୍ୟ ତା'ର ଗୋଡ଼ମାନ ମୋଟା ମୋଟା ହୋଇଥିଲା । ସେ କୋଠରୀ ଭିତରେ ଖୁବ୍ ଗର୍ବର ସହିତ ବୁଲିଯାଇ ତାଙ୍କ ଶୁଣ୍ଢରେ ସମସ୍ତଙ୍କ ସହିତ ହାତ ମିଳାଇଲେ ଓ ଫଳ ତୋଳିଲେ । ତା'ପରେ ଚଳଚ୍ଚିତ୍ର ଅଭିନେତା ନରମ ସ୍ୱରରେ କହିଲେ ଯେ ଏକ ପ୍ରଜାପତି ହେବାକୁ ଚାହାନ୍ତି । ସେ ଭୁଲ କଲେ, କାରଣ ଗୋଟିଏ ବିରାଟ ଆକାରର ପ୍ରଜାପତି ଯେ କେତେ ଅସୁନ୍ଦର ତାହା ନ ଦେଖିଲେ ଜାଣିହେବନାହିଁ । ତା'ର ଡେଣା ଅବଶ୍ୟ ରଙ୍ଗୀନ ଓ ସୁନ୍ଦର ଥିଲା, କିନ୍ତୁ ତା ଉପରେ ରହିଥିବା କାତିଗୁଡ଼ିକ ଅତି ଅସୁନ୍ଦର ଦେଖାଯାଉଥିଲା । ତା'ର ମୁଣ୍ଡର ଦୁଇ ପାଖରେ ଦୁଇଟି ଡିମାଡିମା ଆଖି ଥିଲା ଓ ତା'ର ଶୁଣ୍ଢଟି ଟ୍ରେନର ଦୁଇଟି ଡବା ମଧ୍ୟରେ ଯାଉଥିବା ଭ୍ୟାକୁମ୍ ନଳୀ ପରି ଲାଗୁଥିଲା । ତା'ର ୬ଟି ସରୁ ସରୁ କଳା ଗୋଡ଼ ଥିଲା ଓ ସେଗୁଡ଼ିକର ଶେଷରେ ଆଙ୍କୁଡ଼ା ରହିଥିଲା ।

ଛୋଟ ଝିଅମାନଙ୍କ ମଧ୍ୟରୁ ଜଣେ ଚଷମା ପିନ୍ଧିଥିଲା । ତା'ର ପାଠପଢାରେ କଠିନ ପରିଶ୍ରମ କଲାଭଳି ସେ ଲାଗୁଥିଲା ଓ ସେ ଉଇଲିୟମ୍ ସେକ୍ସପିୟର ହେବାକୁ ଚାହିଁଲା । ସେ ତାହା ହିଁ ହେଲା ଓ ଉପରବେଳା ତମାମ ଖାଲି ମୁକ୍ତ ଛନ୍ଦରେ ଆବୃତ୍ତି କରିବାରେ ଲାଗିଲା । କେବଳ ଥରେ ଦୁଇଥର ସେ ଛନ୍ଦମୟ ଗୀତ ଗାଇଥିଲା । ଆଉ ଗୋଟିଏ ମୋଟା ଝିଅ କଇଁଛ ହେଲା, ଅବଶ୍ୟ ଅତି ବଡ଼ କଇଁଛଟିଏ । ଶ୍ରୀ ଡବ୍‌ସ୍ ଗୋଟିଏ କୋଡ଼ିଏ ମୁଣ୍ଡିଆ ଆଇକୋଷାହେଡ୍ରନ ହୋଇଗଲେ ଓ ତିନିକୋଣିଆ ପୃଷ୍ଠ ସବୁ ରହିଥିବା ଗୋଟିଏ ସ୍ଫଟିକ ଭଳି ଦେଖାଗଲେ । ସେ ବଡ଼ ଅଖାଡୁଆ ଢଙ୍ଗରେ ଗଡ଼ିବାରେ ଲାଗିଲେ । କୋଇଲା ଯୋଗାଉଥିବା ସ୍ତ୍ରୀ ଲୋକଟି ଏକ ସାନ ସୁନା ମୁକୁଟ ଓ ନେଉଳ ଚମର ଜାମା ପିନ୍ଧି ରାଜକନ୍ୟା ସାଜିଥିଲେ । ସେ ଜାମା ପିନ୍ଧିବାରୁ ତାଙ୍କୁ ଭାରି ଗରମ

ଲାଗିଲା । ଆମେ ତାଙ୍କୁ, "ଶାନ୍ତ ସ୍ୱଚ୍ଛତା" ବୋଲି ସମ୍ବୋଧନ କରିଥିଲୁ । ସେ ଗୋଟିଏ ଜର୍ମାନ ରାଜକନ୍ୟା ହୋଇଥିଲେ । ତାଙ୍କର ପ୍ରକୃତ ଜର୍ମାନ ନାଁ ହେଲା "ଦୁରଚ୍ଲାଉକ୍ଟ୍" । କିନ୍ତୁ ଲିକୀ କହିଲେ, ସମସ୍ତଙ୍କୁ ଏହା ଠିକ ଭାବରେ ଉଚ୍ଚାରଣ କରିବାକୁ ୨୦ମିନିଟ ଲାଗିଯିବ । ତେଣୁ ଆମେ ସମସ୍ତେ ଇଂରାଜୀରେ ଏମିତି ଡାକିଥିଲୁ । ସେଠାରେ ଅନେକ ରାଜକନ୍ୟା ଓ ରାଜକୁମାରୀ ଥିଲେ, ଆଉ ସମସ୍ତଙ୍କର ଏଭଳି ମଜାଳିଆ ନାଁ ରହିଥିଲା ।

ଆଉ ଜଣେ ବାଳକ ଗୋଟିଏ ରୋଲ୍ସ ରଏସ୍ କାର ହୋଇଗଲା, ଅବଶ୍ୟ ଗୋଟିଏ ଛୋଟ ଆକାରର । ଚକୋଲେଟ ଗଛ ଏହାର ଏକ ଡାଳରେ ଛୋଟ ପେଟ୍ରୋଲ ପମ୍ପ ଫଳାଇଲା ସେ ଗାଡ଼ିପାଇଁ ପେଟ୍ରୋଲ ଯୋଗାଇଲା । କୋଠରୀ ଭିତରେ ତାହା ଏଣେତେଣେ ଘୂରିବୁଲିଲା, କିନ୍ତୁ ତା'ର ଆଗପଟରେ ସ୍ୱତନ୍ତ୍ର କୁହୁକ ବମ୍ପର ଖଞ୍ଜା ଯାଇଥିବାରୁ ତାହା କାହାରିକୁ ଧକ୍କାଦେଇ ପାରୁନଥିଲା । ଗୋଟିଏ ଛୋଟ ଝିଅ ପରୀରେ ପରିଣତ ହେଲା । ସେ ତାରାଖଞ୍ଜା ନରମ ଧଳା ପୋଷାକରେ ଘୋଡ଼ାଇ ହୋଇପଡ଼ିଥିଲା ଓ ମହୁମାଛି ଭଳି ଡେଣା ଲଗାଇଥିଲା । ଆଉ ଗୋଟିଏ ପିଲା ପରଲଗା ଟୋପି ଓ ମୋଟା ଧଳା ନିଶ ସହିତ ସେନାପତି ବେଶ ଧରିଲା । ତା'ର ପୋଷାକରେ ଧାଡ଼ି ଧାଡ଼ି ପଦକ ଝୁଲୁଥିଲା ଓ ଜୋତାର କଣ୍ଟାଲଗା ଗୋବ ରହିଥିଲା, ଯାହା ମଝିରେ ମଝିରେ ଗାଲିଚାରେ ଲାଖିଯାଉଥିଲା ।

ଚୀନା ଲୋକପରି ଦିଶୁଥିବା ଲୋକଟି ଜଣେ ତିବ୍ବତୀୟ ଲାମା ଥିଲେ । ସେ କହିଲେ ଯେ ଏସବୁରେ ତାଙ୍କର ଆଗ୍ରହ ନାହିଁ, କାରଣ କୌଣସିଟି ସତ ନ ଥିଲା । ମୁଁ ଅବଶ୍ୟ ତାଙ୍କ କଥାରେ ରାଜି ନଥିଲି । କିନ୍ତୁ ଲିକୀ କହିଲେ ଯେ ଚେହେରା ବଦଳାଇବା ଏକ ମଜା କଥା । ତେଣୁ ଶେଷରେ ସେ ଗୋଟିଏ ଚମରୀ ଗାଈର ରୂପ ନେଲେ, କାରଣ ସେ କେତୋଟି ଭଲ ଚମରୀ ଗାଈଙ୍କୁ ଜାଣିଥିଲେ । ଶେଷ ଝିଅଟି ଗୋଟିଏ ପୁଅ ହୋଇଗଲା । ମତେ ଲାଗିଲା ଯେ ସେ ଗୋଟିଏ ଅତି ସାଧାରଣ ପୁଅର ବେଶ ପାଇଲା, କିନ୍ତୁ ସେ ସେଥିରେ ଭାରି ଖୁସି ଥିଲା । ନାବିକ ଜଣକ ଏକ ଧଳା ବୁଲ୍-ଟେରିୟର କୁକୁର ହେଲେ । କିନ୍ତୁ ତାଙ୍କୁ ଆଗରୁ ଜବାବ ଦେବାକୁ ହେଲା ଯେ ସେ ଆମ ଭିତରୁ କାହାକୁ କାମୁଡ଼ିବେ ନାହିଁ ।

ମୁଁ କ'ଣ ହେବି ତାହା ଠିକ କରିପାରିଲି ନାହିଁ । କାରଣ ବହୁତ ପ୍ରକାରର ଜନ୍ତୁ ଓ ମଣିଷ ସେଠାରେ ହେଲେଣି । ମୁଁ ଯନ୍ତ୍ରଟିଏ ହେବାକୁ ମଧ୍ୟ ଚାହିଁଲି ନାହିଁ । ମୁଁ ତେଣୁ ଗୋଟିଏ ଧୂମକେତୁ ହେବାକୁ ମନ କଲି । ହେଲେ ଏହା ମାତ୍ର ଛଅଫୁଟିଆ ଧୂମକେତୁଟିଏ ଥିଲା । କାରଣ ଅଧିକାଂଶ ଧୂମକେତୁ ପୃଥିବୀ ପରି ବଡ଼ ଓ ଲମ୍ବାରେ କେତେକ ଲକ୍ଷ ଲକ୍ଷ କିଲୋମିଟର ହୋଇଥାଏ ।



ଧୂମେକେତୁ ହେବା ଏକ ବିଚିତ୍ର ଅନୁଭୂତି ଥିଲା । ମୁଁ ଧୂମକେତୁ ପାଲଟିବା ପରେ ପ୍ରଥମ କଥା ଅନୁଭବ କଲି ଯେ ମୋ ଭିତରେ ଏକ ଗୁଣୁଗୁଣୁ ଶବ୍ଦ ଲଗାତର ଭାବରେ ବାହାରୁଛି । ମୁଁ ଧୂମକେତୁ ଅବସ୍ଥାରେ ରହିଥିବା ଯାଏଁ ଏହି ଶବ୍ଦ ବାହାରି ଚାଲିଥିଲା । ମୁଁ ତା'ପରେ ଆକାଶକୁ ଉଠିଗଲି ଓ ଏକ ବତୀ ଚାରିପଟେ ଘୂରିବାରେ ଲାଗିଲି । ମୁଁ କେତେ ବେଳେ ତା ପାଖକୁ ଆସୁଥାଏ ତ କେତେବେଳେ ତାଠାରୁ ଦୂରକୁ ଚାଲିଯାଏ । ମୁଁ କିନ୍ତୁ ସର୍ବଦା ସେଇ ଦ୍ୱୀପଆଡ଼କୁ ମୋ ମୁଣ୍ଡକୁ ରଖିଥାଏ । ମାତ୍ର କିଛି ସମୟ ପରେ ମୁଁ ଜାଣିପାରିଲି କିପରି ମୁଁ ଚାହୁଁଥିବା ଜାଗାକୁ ଉଡ଼ିଯାଇହେବ । ପ୍ରାୟ ଦଶ ମିନିଟ ପରେ ମୁଁ ପ୍ରଜାପତି ସହିତ ଆକାଶରେ ନାଚିବାରେ ଲାଗିଲି । ଅବଶ୍ୟ ମୁଁ ଅନୁଭବ କଲି ସେ ସ୍ୱର୍ଗଦୂତ ସହିତ ନାଚିବାକୁ ଚାହୁଁଥିଲା । ତୁମେ ତ ଜାଣିଥିବ ନାଚସାଥୀର ହାତକୁ ଧରିବା ପାଇଁ ସ୍ୱର୍ଗଦୂତର ହାତଥାଏ, ମାତ୍ର ଧୂମକେତୁର ହାତ ନଥାଏ । ମୁଁ ତେଣୁ ତା ସହିତ ଠିକ ଭାବରେ ନାଚି ନପାରି କେବଳ ତା ଚାରିପଟରେ ଘୂରୁଥିଲି । ପରୀ ସହିତ ମଧ୍ୟ ମୁଁ କେତେଥର ନାଚିଲି । ସେ କିନ୍ତୁ ଖାଲି ଏଣେତେଣେ ଉଡ଼ିବାକୁ ଓ ଗଛମାନଙ୍କ ଅଗରେ ଗୋଟିଏ ଗୋଡ଼ରେ ଠିଆହେବାକୁ ବେଶୀ ପସନ୍ଦକଲା ।

ଇଛା ଅନୁସାରେ ବିଭିନ୍ନ ଜାଗାକୁ କିପରି ଉଡ଼ିଯାଇ ପାରିବି ତାହା ଜାଣିବା ପରେ ଅନ୍ୟମାନେ କ'ଣ କରୁଛନ୍ତି ଦେଖିବାକୁ ସୁଯୋଗ ପାଇଲି, ବିଶେଷକରି ଯେତେବେଳେ ରାଫେଲ୍ ପ୍ରଜାପତି ସହିତ ନାଚିବାକୁ ଗଲେ ।

ସେତେବେଳକୁ ଆର ବାଳକ ଦୁଇଜଣ ତାଙ୍କର ରୂପ ବଦଳାଇ ସାରିଥିଲେ । ଜଣେ ଗୋଟିଏ ସୁନ୍ଦର ଛଅଫୁଟିଆ ବଡ଼ଚୁଙ୍କୁଡ଼ି ହୋଇଗଲା । ତା'ର ନିଶ ଆହୁରି ଆଗକୁ ଲମ୍ବିଥିଲା ଓ ତା'ର ଲମ୍ବା ଲମ୍ବା ବଙ୍କା ନଖ ଦେଖି ମୁଁ ଖୁସିହେଲି ଯେ ମୁଁ ଉଚ୍ଚରେ ଅଛି । ଅବଶ୍ୟ ସେଥିରେ ସେ କାହାକୁ ଆଘାତ ଦେଇନଥିଲା । ସେକ୍ସପିୟର ଓ ରାଜକନ୍ୟା ଚିଙ୍ଗୁଡ଼ି ଓ କଇଁଛ ଉପରେ ବସି ବୁଲି ବାହାରିଲେ । ଅନ୍ୟ ବାଳକଟି ଗୋଟିଏ ଭୂତ ହେବାକୁ ଚାହିଁଲା । ମାତ୍ର ଲିକୀ ତାଙ୍କୁ ଆଉ କ'ଣ ହେବାକୁ ବୁଝାଉଥିଲେ । ସେ କହିଲେ, "ଦେଖ, ତୁମେ ଚାହଁ ବା ନଚାହଁ ତୁମେ ବୋଧହୁଏ ଅନେକ ଦିନ ପାଇଁ ଭୂତ ହୋଇ ରହିବାକୁ ଯାଉଛ । ତେଣୁ ଆଜି ଯଦି ତୁମେ ଅଲଗା କିଛି ନହେବ ତେବେ ଭବିଷ୍ୟତରେ ଆଉ କେବେ ଭଲ ଛେନା ବା ଭାକ୍ୟୁମ କ୍ଲିନର ବା ଜର୍ଜ ରକୀ ବା ଅନ୍ୟ କିଛି ହୋଇପାରିବ ନାହିଁ । କିନ୍ତୁ ବାଳକଟି ସେଇ ଭୂତ ହେବାକୁ ଅଡ଼ି ବସିଲା । ତେଣୁ ଲିକୀ



ତାକୁ ଭୂତଟିଏ କରିବାକୁ ରାଜିହେଲେ । ମାତ୍ର ଏକ ସର୍ତ୍ତ ରଖିଲେ ଯେ ସେ ଝରକା ପାଖକୁ ଯିବେ ନାହିଁ । କାରଣ ଯଦି ରାସ୍ତାରେ କେହି ଯାଉଥିଲା ବେଳେ ଝରକା ପାଖରେ ଭୂତଟିକୁ ଦେଖିଦେବ, ସେ ଭାବିବ ଯେ କାହାକୁ ସେଠାରେ ହତ୍ୟା କରାଯାଇଛି । ତେଣୁ ସେ ତାହା ପୋଲିସକୁ ଜଣାଇ ଦେବ ।

ସେ ଭୂତରେ ପରିଣତ ହେବା କଥା ମୁଁ ଦେଖିପାରିଲି ନାହିଁ । କାରଣ ସେ ସମୟରେ ଟଫି ଗଛର ଡାଳଗୁଡ଼ିକରେ ମୁଁ ଛନ୍ଦି ହୋଇଯାଇଥିଲି । କିନ୍ତୁ ସେ ଭୂତ ହେବା ମାତ୍ରେ ଏକ ପ୍ରକାର କଳି ଆରମ୍ଭ ହୋଇଗଲା । ସଇତାନ ତାକୁ ଧରିବାକୁ ଚେଷ୍ଟା କଲା । କାରଣ ସେ ତା'ର ଘରପଢ଼ା କରିନଥିଲା । କିନ୍ତୁ ରାଫେଲ କହିଲେ ଯେ ତା'ର ସେ ଦୋଷ ଧରାଯିବ ନାହିଁ କାରଣ ସେ ସବୁବେଳେ ତା'ର ମାଆ ପ୍ରତି ଭଲ ବ୍ୟବହାର କରେ ଏବଂ ଗତ ସପ୍ତାହରେ ସେ ଜଣେ ଅନ୍ଧ ଲୋକଙ୍କୁ ରାସ୍ତା ପାରିହେବାରେ ସାହାଯ୍ୟ କରିଥିଲା ଓ ଗୋଟିଏ କୁକୁରକୁ କୋଇଲା ଖାତରୁ ଉଦ୍ଧାର କରିଥିଲା ।

ହେଲେ ଲିକୀ ଉଭୟଙ୍କୁ ବୁଝାଇଦେଲେ ଯେ ସେହି ଉପରବେଳାଟା ଦୁହିଁଙ୍କର ଛୁଟି ସମୟ, ତେଣୁ ନିଜ ନିଜର କାମକୁ ସେମାନେ ଭୁଲିଯିବା ଦରକାର । ଏହାପରେ ସେଇ ଭୂତ ଭାରି ମଜା କରିଥିଲା । ସେ ବୁଲ-ଟେରିୟରକୁ ଡରାଇବାକୁ ଚେଷ୍ଟାକଲା, କିନ୍ତୁ ସେ କୁକୁର ରାଗିଗଲା ଓ ଡେଇଁଲାରୁ ଭୂତ ଦେହରେ ଗଳିଗଲା । ତା'ପରେ ସେ ଉଇଲିଅମ ସେକ୍ସପିଅରଙ୍କ ସହିତ ଲାଗିଲା ଓ ସେକ୍ସପିଅର ତାକୁ କହିଲେ:

'ତୁମେ ମଧ୍ୟ ଡେନମାର୍କ ରାଜପୁତ୍ରଙ୍କ ପିତାଙ୍କ ସଦୃଶ
ତାଙ୍କ ଚରିତ୍ରକୁ ରଚିଥିବା କବିଙ୍କୁ ଡରାଉଛ ।'

ତା'ପରେ ସେ ରୋଲସ୍ ରଏସ୍‌କୁ ଚଲାଇବାକୁ ଚେଷ୍ଟାକଲେ । କିନ୍ତୁ ଗାଡ଼ିର ବନ୍ଦଥିବା ଦୁଆର ବାଟରେ ସେ ନିଜର ମୁଣ୍ଡ ଓ ଦେହର ମାତ୍ର ଅଧା ପୂରାଇ ପାରିଲେ । ଗାଡ଼ିର ଭିତର ଏତେ ଛୋଟ ଥିଲା ଯେ ତା'ର ଗୋଡ଼ ପାଇଁ ଆଉ ଜାଗା ନଥିଲା । ଭୂତ ଦେହର କେବଳ ତଳ ଭାଗଟି ଦେଖାଯାଉଥିଲେ ବଡ଼ ଅଜବ ଲାଗେ । ଅସାଧାରଣ ମନେ ହେଉଥିଲେ ବି ଏଭଳି ଘଟଣା ଅନେକ ସମୟରେ ଘଟୁଥିବାର ଦେଖାଯାଏ ।

ମୁଁ ଯେତେବେଳେ ଅକ୍ସଫୋର୍ଡର ନିଉ କଲେଜରେ ସ୍ନାତକ ଶ୍ରେଣୀରେ ପଢୁଥିଲି ସେଠାରେ ଗୋଟିଏ ଭୂତ ଥିଲା । ସେ ଭୂତ ରାଜା ପ୍ରଥମ ଚାର୍ଲସଙ୍କ ସମୟରୁ ଉପର ମହଲାରେ ଚାଲିବାରେ ଲାଗିଥିଲା । ପ୍ରାୟ ୫୦ବର୍ଷ ତଳେ ସେ କଲେଜର ଗୋଟିଏ ଅଂଶ ମରାମତି କରାଯାଇଥିଲା ଓ ଉପର ମହଲାର ଘରଗୁଡ଼ିକୁ ବେଶ୍ ଅଧିକ ଉଚ୍ଚା କରାଯାଇଥିଲା । କିନ୍ତୁ ଭୂତ ଯେମିତି ପୁରୁଣା ମହଲାରେ ଆତଯାତ କରୁଥିଲା ସେମିତି

କରିବାରେ ଲାଗିଲା । ତେଣୁ ତଳ ମହଲାର ଲୋକମାନେ ତା'ର ଜୋତା ଦୁଇଟି ଛାତରୁ ତଳକୁ ଝୁଲିକରି ବୁଲୁଥିବାର ଦେଖୁଥିଲେ । ସେ ଜୋତା ଦୁଇଟି ଖୁବ୍ ଲମ୍ବା ଥିଲା । ମୁଁ ଭଲକରି ଜାଣିଥିବା ଜଣେ ଲୋକ ଯୋତାର ତଳକୁ ଦେଖି ପାରୁଥିଲା ଓ ସେଥିରୁ ଗୋଟିଏ ମରାମତି ଦରକାର କରୁଥିଲା । ଅବଶ୍ୟ ମୁଁ ଜାଣିନାହିଁ କେତେ ଭୂତଙ୍କ ଜୋତା କେତେ ଶୀଘ୍ର ଛିଡ଼ିଯାଏ, କିନ୍ତୁ ସେହି ଭୂତର ଜୋତା ଛିଣ୍ଡିବା କିଛି ଆଶ୍ଚର୍ଯ୍ୟର କଥା ନୁହେଁ । କାରଣ ସେ ପ୍ରାୟ ତିନି ଶତାବ୍ଦୀ ଧରି ଚାଲୁଥିଲା, ଯଦିଓ ଏବେ ସେ ଚାଲିବାପାଇଁ ମାତ୍ର ଗୋଟିଏ ମହଲା ରହିଥିଲା ।

ଲିଙ୍କୀଙ୍କ ଭୋଜିରେ ଲୋକମାନେ ଶୀଘ୍ର ସେହି ଭୂତ ସହିତ ଅଭ୍ୟସ୍ତ ହୋଇଗଲେ । ଏହା ନିଶ୍ଚୟ ମଜାର କଥା ଥିଲା ଯେ ତାହାର ଦେହ ଭିତର ଦେଇ ସବୁକିଛି ଦେଖିହେଉଥିଲା, ତଥାପି ସିଂହ ଆକାରର ଚିଙ୍ଗୁଡ଼ିଟି ଭଳି ତାହା ଏତେ ଭୟଙ୍କର ଦିଶୁନଥିଲା ।

ଏହା ପରେ ପରେ ଲିଙ୍କୀ କହିଲେ ଯେ ଏବେ ଚା ପାନ ସମୟ ହୋଇଗଲା ଏବଂ ଯେଉଁମାନଙ୍କର ଚା ପିଇବାରେ ଅସୁବିଧା ହେବ ସେମାନଙ୍କର ରୂପ ବଦଳା ଯାଇପାରିବ । ଶ୍ରୀ ତବ୍‌ସ୍ ଓ ମୁଁ ବଦଳିବାକୁ ଚାହିଁଲୁ, କାରଣ ଆଇକୋଷାହେଡ୍ରନ୍ ବା ଧୂମକେତୁ କାହାରି ପାଟି ନଥିଲା । ଭୂତ କହିଲା ସେ ସେଇ ରୂପରେ ଖିଆପିଆ କରିବାକୁ ଚେଷ୍ଟା କରିବ । ମାତ୍ର ଲିଙ୍କୀ ମନାକଲେ, କାରଣ ସେ ଢୋକୁଥିବା ଚା ବା ଚୋବେଇକରି ଗିଳୁଥିବା ଖାଦ୍ୟ ତା'ର ଦେହ ଭିତରକୁ ଖସୁଥିବାର ଦୃଶ୍ୟ ଦେଖିବାକୁ କେହି ପସନ୍ଦ କରିବେନାହିଁ । ବଡ଼ଚିଙ୍ଗୁଡ଼ି ମଧ୍ୟ ସେହି ରୂପରେ ଚେଷ୍ଟା କରିବ । ସେ ତା'ର ବୁଢ଼ାଗୋଡ଼ରେ କପକୁ ଧରିଲା କିନ୍ତୁ ତା'ର ପାଟି ତଳ-ଉପର ନ ଖୋଲି କଡୁଆ ଖୋଲୁଥବାରୁ ସେ ପିଇପାରିଲାନାହିଁ । ଏହା ପରେ ତବ୍‌ସ୍ ପୂର୍ବପରି ମଣିଷ ହୋଇଗଲେ, କାରଣ ସେ ଆଉ ଯାହା ହେବାକୁ ଚାହୁଁଥିଲେ ସେଥିରେ ବି ପାଟି ନ ଥିଲା । ଭୂତ ଟିକିଏ ରୁଷିକରି ଥିଲା ଓ ଗୋଟିଏ ଦମକଳ ହେବାକୁ ଚାହିଁଲା । କାରଣ ସେ ଭାବିଲା ଏଇ ରୂପରେ ସେ ଚା ଟକ ଶୀଘ୍ର ପିଇଦେବ । କିନ୍ତୁ ଲିଙ୍କୀ ତାକୁ ଏମିତି ଗୋଟିଏ ଦମକଳ କରିଦେଲେ ଯାହା ପାଣି ନ ଫୋପାଡ଼ି ଜଳନ୍ତା ତେଲ ଉପରକୁ ଫେଣ ପକାଏ । ଫଳରେ ସେ ଅନ୍ୟମାନଙ୍କଠାରୁ ଖୁବ୍ ଅଧିକ ଚା ପିଇପାରିଲାନାହିଁ ।

ମୁଁ ଗୋଟିଏ ବଡ଼ଥଣ୍ଟିଆ ଟୁକାନ୍ ପକ୍ଷୀ ହୋଇଗଲି । ଏହା ଅବଶ୍ୟ ଗିନିସ ବିଜ୍ଞାପନର (ଯେଉଁଥିରେ ଗୋଟିଏ ଟୁକାନ୍ ପକ୍ଷୀ ବିଅର୍ ପିଉଛି) ଆଗର କଥାଥିଲା, ମୁଁ ତେଣୁ ବିଅର୍ ମାଗିନଥିଲି । ଏତେ ବଡ଼ ଥଣ୍ଟ ଯୋଗୁ ଭାରସାମ୍ୟ ରଖିବାରେ ପ୍ରଥମେ ମୋତେ ଟିକିଏ ଅସୁବିଧା ହେଲା । ଏମିତିକି ଭୋଜି ସରିଲା ପର୍ଯ୍ୟନ୍ତ ମୁଁ ଯେତେବେଳେ

ମୋ ମୁଣ୍ଡକୁ ହଠାତ ଟେକୁଥିଲି ମୋ ଲାଞ୍ଜ ଆପେ ଆପେ ଲମ୍ବି ଯାଉଥିଲା । ତେବେ ଏହି ରୂପରେ ମୁଁ ସହଜରେ ଉଡ଼ିପାରୁଥିଲି । ମୁଁ ଚକୋଲେଟ ଗଛ ଉପରକୁ ଉଡିଗଲି ଓ ଚିଙ୍କୁଡ଼ିଟି ଗୋଟିଏ ଉଡୁଥିବା ଜୀବରେ ପରିଣତ ହେବାର ଦେଖିଲି । ତାଙ୍କୁ ଏତେ ସହଜ କାମ କରିବାକୁ ଦେଇଥିବାରୁ ଲିକୀ ସମସ୍ତଙ୍କୁ ଧନ୍ୟବାଦ ଦେଲେ । ସେ କହିଲେ, "ମଣିଷଙ୍କୁ ପଶୁରେ ପରିଣତ କରିବା ଅତି ସ୍ୱାଭାବିକ କଥା । ମାତ୍ର ଅଳ୍ପ କେତେ ଲକ୍ଷ ବର୍ଷ ତଳେ ଆମ ପୂର୍ବପୁରୁଷମାନେ ପଶୁ ହିଁ ଥିଲେ । ମୁଁ ଭାବୁଛି ଆମର ଉତ୍ତରାଧୀକାରୀମାନେ ବି ପଶୁ ହୋଇଯିବେ । ଯଦି ମଣିଷ ଜାତି ତା'ର ବ୍ୟବହାରକୁ ନ ସୁଧାରେ ତେବେ ସେମାନେ ଆହୁରି ଖରାପ ପଶୁ ହୋଇଯିବେ । ମଣିଷକୁ ପଶୁ କରିବା ଅତି ପ୍ରାଚୀନ ଓ ସରଳ ଯାଦୁ । ତୁମର ମନେଥିବ କେମିତି ସିର୍ସ ୟୁଲିସିସ୍‌ର ନାବିକମାନଙ୍କୁ ଘୁଷୁରୀ କରିଦେଇଥିଲା ? ଏବେ ମଧ୍ୟ ଅତ୍ୟଧିକ ବିଷାକ୍ତ କୋଳି ଖାଇକରି ଅନେକ ମଣିଷ ପ୍ରତି ବର୍ଷ ଘୁଷୁରୀ ପାଲଟିଯାଉଛନ୍ତି । ୱିଲ୍‌ଟସାୟାର ଅଞ୍ଚଳରେ ଏହି ବିଷାକ୍ତ କୋଳି ବହୁତ ଫଳେ, ତେଣୁ ସେଠାରେ ଚମତ୍କାର ଘୁଷୁରି ମାଂସ ମିଳିଥାଏ ।

"ମୁଁ ଜଣେ ପିଲା ଅର୍ଣ୍ଣେଷ୍ଟ ହିଗିନ୍‌ବୋଥାମ୍‌କୁ ଜାଣିଥିଲି । ସେ ଖୁବ୍ ଲୋଭୀ ଥିଲା । ୱିଲ୍‌ଟସାୟାରର ଚିଲମାର୍କ ପାଖରେ ଥିବା ଜଙ୍ଗଲରେ ସେ ଥରେ ବଣଭୋଜି ପାଇଁ ଯାଇଥିଲା । ପାର୍ଲାମେଣ୍ଟ ଭବନ ନିର୍ମାଣ ପାଇଁ ସେଠାରୁ ପଥର ଅଣାଯାଇଥିଲା । ଗୋଟିଏ କୁକୁରଟଣା ଗାଡ଼ିରେ (ମଟର ଗାଡ଼ି ଆସିବା ପୂର୍ବରୁ) ଚା' ବୁହାହୋଇ ଆସିଲାବେଳେ ଗାଡ଼ିର ଚକା ବାହାରିଗଲା । ତେଣୁ ସେମାନେ କେହି ଚା' ପାଇଲେ ନାହିଁ । ଖୁବ୍ ଭୋକ ଲାଗୁଥିବାରୁ ହିଗିନ୍‌ବୋଥାମ୍ ବେଶ୍ ଗୁଡ଼ାଏ ବିଷାକ୍ତ କୋଳି ଖାଇଦେଲା । ସେ ତେଣୁ ଗୋଟିଏ ପୁରୁଣା-ଗ୍ଲୋସେଷ୍ଟର ଜାତିର ଘୁଷୁରି ହୋଇଗଲା ।"

"ତା'ର ବାପା ତାକୁ ପଢ଼ିପାରୁଥିବା ଏକ ଶିକ୍ଷିତ-ଶୂକର ଭାବରେ ସର୍କସରେ ଦେଖାଇବାକୁ ଭାବୁଥିଲେ । ତା'ର କିନ୍ତୁ ଜଣେ ଦାଦା ଗ୍ରୀକ ଭାଷାରେ ଅଧ୍ୟାପକ ଥିଲେ ଓ ତାଙ୍କର ମନେଥିଲା ଯେ ୟୁଲିସିସ୍ *ମୋଲୀ* ନାମକ ଏକ ଉଦ୍ଭିଦ ସାହାଯ୍ୟରେ ତାଙ୍କର ନାବିକମାନଙ୍କୁ ମଣିଷ ରୂପକୁ ଫେରାଇ ଆଣିପାରିଥିଲେ । କିନ୍ତୁ ତାହା କିପରି ଦେଖାଯାଏ ତାହା ସେ ଜାଣିନଥିଲେ । ତେଣୁ ବସନ୍ତ ଋତୁରେ ସେ ଓ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ ଗୋଟିଏ ଜାହାଜରେ ଗ୍ରୀସ ଯାଇଥିଲେ । ତାଙ୍କ ସାଙ୍ଗରେ ସେ ଅର୍ଣ୍ଣେଷ୍ଟ ଘୁଷୁରିକୁ ଓ ସିବ୍‌ଥୋର୍ପଙ୍କ *'ଫ୍ଲୋରା ଗ୍ରୀକା'* ଗ୍ରନ୍ଥଟିକୁ ନେଇଥିଲେ । ସେହି ବହି ସହିତ ମିଳାଇ ସେମାନେ ପ୍ରତ୍ୟେକ ଉଦ୍ଭିଦକୁ ଚିହ୍ନିବାକୁ ଚେଷ୍ଟାକଲେ ଓ ଅର୍ଣ୍ଣେଷ୍ଟକୁ ଚଖାଇଲେ । ଶେଷରେ ସେମାନେ ସେହି ଉଦ୍ଭିଦଟିକୁ ପାଇଲେ ଯାହା ଖାଇବାରୁ ଅର୍ଣ୍ଣେଷ୍ଟ ପୁଣି ମଣିଷ ହୋଇଗଲା । ସେଥିରୁ ସେମାନେ ଜାଣିଲେ ଯେ ତାହା ନିଶ୍ଚୟ *ମୋଲୀ* ହୋଇଥିବ ଏବଂ

ତାହା ଉପରେ ଗୋଟିଏ ନିବନ୍ଧ ଲେଖିକରି ସେମାନେ ଅଧ୍ୟାପକମାନେ ପଢୁଥିବା ଏକ ଅଜବ ପତ୍ରିକାରେ ପ୍ରକାଶ କରିଥିଲେ ।

ତା'ର ମଣିଷ ରୂପ ଫେରି ପାଇଲା ପରେ ବି ଅର୍ଣ୍ଣେଷ୍ଟର ଦେହରୁ ଦାଗଗୁଡ଼ିକ ଗଲାନାହିଁ, ତେଣୁ ସେ ସାରା ଜୀବନ ପାଇଁ 'ଦାଗୀ' ହୋଇ ରହିଗଲା । ସେ ତା'ର ଲୋଭକୁ ବି ଛାଡ଼ିପାରିନଥିଲା, ତଥାପି ସେ ଆଉ କେବେ ବି (ଘୁଷୁରି ମାଂସରେ ତିଆରି) ସସେଜ୍ ଖାଉନଥିଲା ।

"ଏବେ ସମସ୍ତଙ୍କର ରୂପ ବଦଳା ସରିଲାଣି, ଚାଲନ୍ତୁ ଏବେ ଚା' ପାନ କରିବା ।"

କୋଠରୀର ଅନ୍ୟ ମୁଣ୍ଡରେ ଥିବା କାଛଟି ହଠାତ ଅଜବ ରୂପ ଧରିଲା । ଅବଶ୍ୟ କାଛରେ ଥିବା ଫୁଲର ଚିତ୍ର ସବୁ ସତ ଫୁଲ ହୋଇଗଲା ଓ ଚଟାଣ ଉପରରେ ଗଦାହୋଇଗଲା । ଆମେ ସବୁ ଉଡ଼ି, ଚାଲି, ଗୁରୁଣ୍ଡି ବା ଗାଡ଼ି ଚଳାଇ କରି ଏକ ସୁନ୍ଦର ଟେବୁଲ ପାଖରେ ବସି ପଡ଼ିଲୁ । ଏହା ଉପରେ ଓ ତାହାର ଚାରିପଟରେ ବିଚିତ୍ର ଦେଖାଯାଉଥିବା ଜିନିଷଗୁଡ଼ିଏ ରହିଥିଲା । କେତେକ ଅତିଥିଙ୍କ ପାଇଁ ଚଉକି ଥିଲା । ମୋ ପାଇଁ ମୋର ପର ସହିତ ମେଳ ଖାଉଥିବା ଗୋଟିଏ ସୁନ୍ଦର ମଣିଖଚିତ ଆସନ ପଡ଼ିଥିଲା । ପ୍ରଜାପତିଟି ତିନିଫୁଟ ଚଉଡ଼ାର ଗୋଟିଏ ବଡ଼ ଫୁଲ ଉପରେ ବସିଲା । ହାତୀ ସର୍କସ କଲା ଭଳି ଚାରୋଟି ଛୋଟ ପିମ୍ପା ଉପରେ ଗୋଡ଼ରଖି ଛିଡ଼ାହେଲା । କଇଁଚଟି ଡେରିରେ ପହଞ୍ଚିଥା'ନ୍ତା, କିନ୍ତୁ ରୋଲ୍ସ ଗାଡ଼ି ତାକୁ ଟାଣିଆଣିବାରୁ ସେ ଶୀଘ୍ର ପହଞ୍ଚିଗଲା । ପିଆନୋ ଷ୍ଟୁଲ ଭଳି ଏକ ଉଚ୍ଚ ଆସନରେ ସେ ଟେବୁଲ ପାଖରେ ବସିଲା ।

ସମସ୍ତଙ୍କ ପାଖରେ କପ୍ ରହିଥିଲା, କିନ୍ତୁ କେଉଁଠି ବି ଚା' ପାତ୍ର ନଥିଲା । ଆମ ଆଗରେ ଥିବା ବୋତାମକୁ ଚିପିବାରୁ ଟେବୁଲରେ ଥିବା କଣାରୁ ଚା' ଓ କ୍ଷୀରର ଫୁଆରା ବାହାରି ଆମ କପ୍‌ଗୁଡ଼ିକରେ ଭରିଗଲା । ମୁଁ ଗୋଟିଏ ଗୋଡ଼ରେ ମୋର ଆସ୍ଥାନକୁ ଜାବୁଡ଼ିଧରି ବସିଲି ଓ ଆର ଗୋଡ଼ରେ ଚା' କପକୁ ଟେକିପାରିଲି । ମାତ୍ର ମୋର ଚଞ୍ଚୁରେ ଚା' ପିଇବା ସହଜ ନ ଥିଲା । ମୁଁ ତେଣୁ ଚଞ୍ଚୁକୁ ମେଲିଦେଇ ଚା'ର ଫୁଆରାକୁ ସିଧା ସେଥିରେ ଧରିଲି । ଏହା ଫଳରେ ଟୋପେ ବି ଚା' ତଳେ ପଡ଼ିଲା ନାହିଁ ।

ଦମକଳ ପାଇଁ ଚା' ଶୋଷିନେବା ଖୁବ୍ ସହଜ ହେଲା ଓ ସେ ସୁନ୍ଦର ଫୋଟକାମାନ ଫୁଙ୍କିବାରେ ଲାଗିଲା । ମାତ୍ର ରୋଲ୍ସ ରୟେସ୍ ଗାଡ଼ିକୁ କିଛି ବୁଦ୍ଧି ଦେଖାଗଲାନାହିଁ । ସେ ନିହାତି ଭାବରେ ଚା' ପିଇବାକୁ ଚାହୁଁଥିଲା ଓ ଟେବୁଲ ପାଖକୁ ମଧ୍ୟ ଆସିଗଲା । କିନ୍ତୁ କେହି ଜାଣି ନଥିଲେ ତାକୁ ଚା' କେଉଁ ବାଟରେ ଦିଆଯିବ - ତା'ର ପେଟ୍ରୋଲ ଟାଙ୍କିରେ ବା ରେଡ଼ିଏଟର ଭିତରେ । ଲିକୀ ଏ ବିଷୟରେ ସେମାନଙ୍କୁ

କିଛି କହିଲେନାହିଁ, କାରଣ ତାଙ୍କ କହିବା ଅନୁସାରେ ସେ ଏସବୁ ଯନ୍ତ୍ରପାତି କଥା କିଛି ଜାଣିନଥିଲେ । ଉଇଲିୟମ ସେକ୍ସପିୟର କହିଲେ,

'ବହୁରୂପୀ ଏଣ୍ଟୁଅ ପବନ ପିଏ ଓ ପୋକ ମାଟି ଖାଇ ବଞ୍ଚେ;
ଏହି କୁହୁକ କାର ଭାରତୀୟ ପତ୍ର ଖାଇ ବଞ୍ଚିବ',

ଏବଂ ସେ ପେଟ୍ରୋଲ ଟାଙ୍କିରେ ଚା' ଦେବାକୁ ପରାମର୍ଶ ଦେଲେ । କିନ୍ତୁ ଡବ୍‌ସ୍ କହିଲେ ଯେ ଶ୍ରୀଲଙ୍କାରୁ ଆସିଥିବା ସେହି ଚା'ରେ ତାଙ୍କର କାର୍‌ବୁରେଟର ରୁନ୍ଧି ହୋଇଯିବ । ତା'ଛଡ଼ା ବହୁରୂପୀ ଏଣ୍ଟୁଅ ବିଷୟରେ ହ୍ୟାମ୍‌ଲେଟ ଠିକ କଥା କହିନଥିଲା, କାରଣ ସେ ପ୍ରକୃତରେ ମାଛି ଖାଏ । ତେଣୁ ତା'ର ରେଡିଏଟର ଠିପିକୁ ଖୋଲି ଚା' ଢାଳି ଦିଆଗଲା । ଯେତେବେଳେ ସେ ପୂର୍ବ ରୂପକୁ ଫେରିଆସିଲେ ଓ କଥା କହିବାକୁ ପାଟି ପାଇଲେ, ସେ କହିଲେ ଯେ ସେ ଚା' ଖୁବ୍ ସୁଆଦିଆ ଥିଲା ।

ଚା' ଛଡ଼ା ଆମେ ସବୁପ୍ରକାରର ସୁଆଦିଆ କେକ୍ ଓ ସ୍ୟାଣ୍ଡଉଇଚ ଖାଇଲୁ । ମୁଁ ପ୍ରଥମେ କାଭିଆର୍ ବା ଷ୍ଟର୍‌ଜନ୍ ମାଛଅଣ୍ଡାର ଆଚାର ଖାଇବାରେ ଲାଗିଲି । ଏହା ଏତେ ଭଲ ଖାଦ୍ୟ ଯେ ଇଂଲଣ୍ଡରେ ଯଦି କିଏ ଷ୍ଟର୍‌ଜନ୍ ମାଛଟିଏ ଧରିବ, ସେ ତାହା ରାଜାଙ୍କୁ ଦେବାକୁ ବାଧ୍ୟ ହୋଇଥାଏ । ତେଣୁ ଏହାକୁ ରାଜକୀୟ ମତ୍ସ୍ୟ କୁହାଯାଏ ଏବଂ, ଲିକୀଙ୍କ କହିବାରେ, ଏହି ମାଛର ଦଳକୁ ରାଜକୀୟ ସାର୍କ ମହାବିଦ୍ୟାଳୟ *(ରୟାଲ୍ କଲେଜ ଅଫ୍ ଷ୍ଟର୍‌ଜନ୍‌ସ୍)* କୁହାଯାଏ । ଲିକୀ ପୁଣି କହିଲେ ଏଇ ମାଛ ସେଦିନ ସକାଳୁ କାସ୍ପିଆନ ସାଗରରେ ପହଁରୁଥିଲା ଓ ଅବ୍‌ଦୁଲ ମକ୍କର ସେଠାରେ ରହୁଥିବା ଗୋଟିଏ କମୁନିଷ୍ଟ ବେତାଳଠାରୁ ପାଇଥିଲେ ଓ କୁହୁକ ଗାଲିଚାରେ ଉଡ଼ାଇକରି ଆଣିଥିଲେ ।

ମୁଁ ତୁମକୁ କେକ୍, ବରଫ ଓ ଫଳ ବିଷୟ କହିବାକୁ ଯାଉନାହିଁ । ସେସବୁ ମୋତେ କେତେ ବଢ଼ିଆ ଲାଗିଥିଲା କହିଲେ ତୁମେ ମୋତେ ଲୋଭୀ ବୋଲି ଭାବିପାର । ଅବଶ୍ୟ ବଡ଼ ଥଣ୍ଟିଆ ଟୁକାନ୍‌ମାନେ ମଣିଷଙ୍କ ପସନ୍ଦ ଖାଦ୍ୟଗୁଡ଼ିକୁ ଖୁବ୍ ଭଲପା'ନ୍ତି । ଚିଡ଼ିଆଖାନାରେ ଥିବା ଟୁକାନମାନେ ଅଙ୍ଗୁର ଓ ଚକୋଲେଟ ଖାଇବାକୁ ଭାରି ଭଲପା'ନ୍ତି । ବୁଲ-ଟେରିଅର ଖଣ୍ଡେ କଞ୍ଚା ମାଁସ ଓ ଭଲ ମଞ୍ଜ ହାଡ଼ ଖଣ୍ଡେ ପାଇଲା । ରୋଲ୍‌ସ୍‌କୁ ଚା' ଛଡ଼ା ଉଡ଼ାଜାହାଜରେ ପଡୁଥିବା କିଛି ଦାମୀ ପେଟ୍ରୋଲ ଦିଆଗଲା । ହାତୀ ଆମ ସମସ୍ତଙ୍କ ଭଳି କେକ୍ ଖାଇଲା । ସେମିତି ଚମରୀ ଗାଇ ଏହାକୁ ଖାଇବା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । କଇଁଚକୁ ସେ ରହୁଥିବା ଗାଲାପାଗୋସ ଦ୍ୱୀପର କୋବି ଭଳି ଏକପ୍ରକାର ସ୍ୱତନ୍ତ୍ର ଧରଣର ଉଦ୍ଭିଦ ଦିଆଯାଇଥିଲା । ପ୍ରଜାପତି ତା'ର ହାତୀ ଶୁଣ୍ଢ ପରି ମୋଟା ଶୋଷକ ବାଟେ ମହୁ ପିଇବାରେ ଲାଗିଲା । ସଇତାନ ଛଅ ବାଲ୍ଟି ଦିଆସିଲି ଓ ବଡ଼ଚାମୁଚରେ ଚାମୁଚାଏ ଲଙ୍କାଗୁଣ୍ଡ ସହିତ କିଛି ଘନ ସଲ୍‌ଫ୍ୟୁରିକ୍ ଏସିଡ ପିଇଲା ।

ତା' ପରେ ଶ୍ରୀ ଡବ୍‌ସ୍ ସିଜିଅମ୍ ପରମାଣୁରେ ପରିଣତ ହେବାକୁ ଚାହିଁଲେ । କାରଣ ପରମାଣୁ ଭିତରେ ତାହା ସବୁଠାରୁ ମୋଟା, ଯଦିଓ ସବୁ ପ୍ରକାରର ପରମାଣୁ ଅତି ଛୋଟ ହୋଇଥିବାରୁ ଖାଲି ଆଖିକୁ ଦେଖାଯା'ନ୍ତି ନାହିଁ । ସେ କିନ୍ତୁ ବିଶେଷ ଭାବରେ ବଡ଼ ରୂପ ନେଇଥିଲେ – ଓସାରରେ ପ୍ରାୟ ଚାରି ଫୁଟ ଥିଲେ । ତାହା ବେଶ୍ ଗୋଲ ଦିଶୁଥିଲା ଓ କେନ୍ଦ୍ରର ଚାରିପଟେ ଗୁଣୁଗୁଣୁ କରି ଘୂରୁଥିବା ଛୋଟ ଛୋଟ ଟୁକୁଡ଼ାରେ ଭରି ରହିଥିଲା । ସେଗୁଡ଼ିକ ଏତେ ଜୋରରେ ଘୂରୁଥିଲେ ଯେ ତାଙ୍କୁ ଠିକ ଭାବରେ ଦେଖିବା ଅସମ୍ଭବ ଥିଲା । ସେ ଛୋଟ ଖଣ୍ଡରୁ ଗୋଟିଏ ବେଳେ ବେଳେ ବାହାରି ଆସୁଥାଏ ଏବଂ ଥରେ ଦୁଇଥର ତାହା କୋଠରୀର ଆର ମୁଣ୍ଡକୁ ଚାଲିଯାଇଥିଲା । ଶ୍ରୀ ଡବ୍‌ସ୍ କହିଲେ ପରମାଣୁ ଉତ୍ତେଜିତ ହୋଇଗଲେ ସେଭଳି ଘଟିଥାଏ । କିନ୍ତୁ ସବୁଥର ସେହି ଛୋଟ ଅଂଶଟିକୁ ସେ ଫେରାଇ ଆଣୁଥିଲେ ଓ ତାହା କଲାବେଳେ ସୁନ୍ଦର ଆଲୁଅର ଗୋଟିଏ ଝଲକ ଖେଳାଉଥିଲେ । ଆମେ ମ୍ୟୁଜିକାଲ ଚେୟାର ଖେଳ ଖେଳିବାରେ ଲାଗିଗଲୁ । ଚମରୀ ଗାଇ, କଇଁଚ, ହାତୀ, କାର୍ ଓ ଦମକଳ ଚେୟାର ହେଲେ ଏବଂ ଲିକୀ ନିଜେ ବସିପଡ଼ି ଆଉ ପାଞ୍ଚୋଟି ଚେୟାର କରିଥିଲେ । ସେ ଖାଲି ଜାଗାରେ ବସି ପଡ଼ିଲାବେଳେ ମନେ ହେଉଥିଲା ସେ ଗଡ଼ିପଡ଼ିବେ, କିନ୍ତୁ ସେ ଠିକ ଚଉକିରେ ବସିଲାଭଳି ଅଟକି ରହୁଥା'ନ୍ତି ଓ ଉଠିଲାବେଳକୁ ସେ ଜାଗାରେ ଗୋଟିଏ ଚଉକି ରହିଯାଉଥାଏ ।

ଶେଷ ଚେୟାରଟିରେ ସେ ବସି ରହିଲେ ଏବଂ ସେଠାରେ ନଥିବା ଗୋଟିଏ ପିଆନୋ ବଜାଇଲେ । ଏହା ଭାରି ମଉଜିଆ ଖେଳ ପରି ଲାଗିଲା । କାରଣ ପାଞ୍ଚୋଟି ଚଉକି ନିଜ ନିଜ ଭିତରେ ଏପଟ ସେପଟ ହୋଇ ଖେଳୁଥିଲେ । ଅଧିକାଂଶ ଲୋକ ମେଜିକ୍ ଚେୟାର ପାଖରେ ରହିଥିଲେ ବସିବାକୁ ଚେଷ୍ଟା କରୁଥିଲେ । ମାତ୍ର ଯେତେବେଳେ ପିଆନୋ ବାଜିବା ବନ୍ଦ ହେଲା, ଗୋଟିଏ ଚଉକି ଉଭେଇ ଗଲା । ରାଜକନ୍ୟା ଓ ବୁଲ-ଟେରିୟର ଦୁହେଁ ଚମରୀଗାଈ ଉପରେ ବସିବାକୁ ଧାଇଁଗଲେ । କୁକୁର ତା'ଉପରକୁ କୁଦାମାରିଲା, କିନ୍ତୁ ସେ ଯାଇ ଆର ପଟରେ ପଡ଼ିଗଲା । କିନ୍ତୁ ସେ କାର୍ ଭିତରେ ବସିଗଲା ଏବଂ ସିଜିଅମ୍ ପରମାଣୁ ହୋଇଥିବା ଡବ୍‌ସ୍ ବାକି ରହିଗଲେ । ତା'ପର ଥରକୁ ସେକ୍‌ସପିୟର ଠିଆ ହୋଇ ରହିଲେ ଓ ତା'ପରେ ସ୍ଥୂଳକାୟ ମେଜର ଜେନେରାଲଙ୍କ ପାଳି ପଡ଼ିଲା । ତା'ପରେ ଗୋଟିଏ ବଡ଼ ଗଣ୍ଡଗୋଳ ଲାଗିଯାଇଥିଲା କାରଣ ପୁଅ ହୋଇଥିବା ଛୋଟ ଝିଅଟି କହିଲା ଯେ ପରୀ, ପ୍ରଜାପତି, ଟୁକାନ ପକ୍ଷୀ ଓ ସ୍ୱର୍ଗଦୂତ ଉଡ଼ିଲା ବେଳେ ସେ ଉଡ଼ି ନପାରିବା ଅନ୍ୟାୟ । ତେଣୁ ଆମେ ରାଜି ହେଲୁ ଯେ ଆମେ ଭୂଇଁ ଉପରେ ରହିବୁ, ମାତ୍ର ଡେଣା ସାହାଯ୍ୟରେ ଆମେ ଡେଇଁପାରିବୁ । ତା'ପର

ଥରକୁ ମୁଁ ମଧ୍ୟ ବାଦ୍ ପଡ଼ିଲି, କାରଣ ମୋର ଲାଞ୍ଜ ପରୀ ପୋଷାକର ଝାଲରରେ ଲାଖିଗଲା । ଏମିତି ଖେଳଟି ଚାଲିଲା, ଯେତେବେଳେ ହାତୀ ଓ ଦମକଳ ଚଉକି ଦୁଇଟି ପାଇଁ କେବଳ ସଇତାନ, କୁକୁର ଓ ବାଳକ ପ୍ରତିଯୋଗୀ ଭାବରେ ରହିଲେ ।

ତା'ପରେ ହଠାତ ଦୁଆର ଖୋଲିଗଲା ଓ ଡ୍ରାଗନ ପମ୍ପେ ପଶିଆସିଲା । ନିଶ୍ୱାସରେ ତା'ର ନିଆଁହୁଳା ବାହାରୁଥାଏ ଓ ଖୁସିରେ ସେ ଚିଁ ଚିଁ ଶବ୍ଦ କରୁଥାଏ । ଅବଶ୍ୟ ସେ ଗୋଟିଏ ଅତି ଛୋଟ ଡ୍ରାଗନ ଥିଲା । କିନ୍ତୁ ମୁଁ ମୋର ପରଗୁଡ଼ିକୁ ପୋଡ଼ିବାରୁ ବଞ୍ଚାଇବା ପାଇଁ ଆକାଶକୁ ଉଡ଼ିଗଲି । ପ୍ରାୟ ଅନ୍ୟ ସମସ୍ତେ ମଧ୍ୟ ଦଉଡ଼ି ପଳାଇଲେ । କିନ୍ତୁ ସଇତାନ କୁଆଡ଼େ ଗଲାନାହିଁ, କାରଣ ଏ ପ୍ରକାର ପରିସ୍ଥିତି ସହିତ ସେ ଅଭ୍ୟସ୍ତ । ଦମକଳ ମଧ୍ୟ ପଳାଇ ନ ଯାଇ ତା ଆଡ଼କୁ ନିଆଁଲିଭା ଫେଣ ଛାଡ଼ିଲା । ପମ୍ପେ ଭାରି ଛିଙ୍କିବାରେ ଲାଗିଲା ଏବଂ ଘରସାରା ନିଆଁ ଗୁଲ ଖେଳିଗଲା । ପରୀର ପୋଷାକରେ ନିଆଁ ଲାଗିଗଲା । ମାତ୍ର ପରୀ ଆଘାତ ପାଇବା ପୂର୍ବରୁ ଦମକଳ ତାହା ଲିଭାଇ ଦେଇଥିଲା । ଅବ୍‌ଦୁଲ ମକ୍କର ପମ୍ପେ ଆଡ଼କୁ କୁଦିପଡ଼ିଲା, ମାତ୍ର ସେ ହାତୀର ଗୋଡ଼ରେ ଧକ୍କା ଖାଇଲା । ଯଦି ଲିଙ୍କୀ ଚିମୁଟାର ରୂପ ନେଇନଥା'ନ୍ତେ ତେବେ କ'ଣ ଘଟିଥା'ନ୍ତା ତାହା ମୁଁ ଭାବିପାରୁ ନାହିଁ । ଚିମୁଟା ରୂପରେ ସେ ଚଟାଣ ଉପରେ ଡେଇଁ ପଡ଼ିଗଲେ ଓ ପମ୍ପେର ଲାଞ୍ଜକୁ ଟାଣି ଧରିଲେ । ସେ ନିଶ୍ଚୟ ଗୋଟିଏ ଭଲ ରଗ୍‌ବି ଖେଳାଳି ହୋଇଥିବେ, କାରଣ ତାହା ଗୋଟିଏ ଅତି ସୁନ୍ଦର 'ପକଡ଼' ଥିଲା ।

ଅଳ୍ପ ସମୟ ଭିତରେ ପମ୍ପେ କଡ଼ିରେ ବନ୍ଧା ହୋଇଗଲା ଓ ଖୁବ୍ ଲାଜୁଆହୋଇ ବସିରହିଲା । ଶ୍ରୀ ଲିଙ୍କୀ ଭାରି ରାଗୀ ଯାଇଥିଲେ । ଚିମୁଟା ରୂପ ଛାଡ଼ି ପୂରା ମଣିଷ ନ ହେଉଣୁ ସେ ଅବ୍‌ଦୁଲ ମକ୍କରକୁ କହିଲେ, "ହେ ବେତାଳଙ୍କ ଭିକରେ ଜଘନ୍ୟ, ମୁଁ କ'ଣ ତୁମକୁ ଆଦେଶ ଦେଇନଥିଲି ଯେ ସେଇ ଅଗ୍ନି-ଶ୍ୱାସୀକୁ ରୋଷେଇ ଘରେ ମୋ ଗାଧୁଆ ପାଇଁ ପାଣି ଗରମ କରୁଥିବା ଚୂଲା ଭିତରେ ବନ୍ଦ କରିଦେବାକୁ? ତାହେଲେ ସେ ଅନ୍ତତଃ ମୋ ପାଇଁ ପାଣି ଗରମ କରିଥା'ନ୍ତା ।

"ହେ ଯାଦୁ ସମ୍ରାଟ, ଆପଣ ସେ ଆଦେଶ ମୋତେ ଦେଇଥିଲେ ଏବଂ ଆପଣଙ୍କ ଆଦେଶ ଅନୁସାରେ ତାହା କରାଯାଇଥିଲା । ମୁଁ ଜାଣିନାହିଁ, କେଉଁ ବଦମାସ ଯାଦୁକର ତାକୁ ମୁକୁଳେଇ ଦେଲା ?"

କିନ୍ତୁ ଏହାର ଉତ୍ତର ତାଙ୍କୁ ଖୁବ୍ ଶୀଘ୍ର ମିଳିଗଲା । ସେ ଘର ଭିତରକୁ ଜଣେ ପାଇପ ମିସ୍ତ୍ରୀ ପଶିଆସିଲେ - ସେ ଧରିଥିବା ବିରାଟ ରେଞ୍ଚ ଭଳି ଯନ୍ତ୍ରରୁ ମୁଁ ତାଙ୍କୁ ପାଇପ ମିସ୍ତ୍ରୀ ବୋଲି ଜାଣିଗଲି । ସେ କହିଉଠିଲେ, "ଆପଣମାନେ କ'ଣ ଭାବିଛନ୍ତି ଯେ ମୁଁ ଡ୍ରାଗନନିଧକ ଯୋଦ୍ଧା ସେଣ୍ଟ ଜର୍ଜ? ମୁଁ ଆସିଛି ପାଣି ପାଇପ ମରାମତି କରିବାକୁ,

ଡ୍ରାଗନ ମାରିବା ପାଇଁ ନୁହେଁ । ତା'ପରେ ସେ ହଠାତ ଭୋଜିସଭାକୁ ଦେଖିଲେ ଓ ସେ ଦୃଶ୍ୟରେ ତାଙ୍କର ଆଖି ଢିମା ଢିମା ହୋଇଗଲା ଓ ପାଟି ଖୁବ୍ ମେଲିଗଲା ।

ଶ୍ରୀ ଲିକୀ କହିଲେ, "ବସନ୍ତୁ, ଆମ ସହିତ ଚା' ପିଅନ୍ତୁ । ମୁଁ ଜାଣେ ତୁମେ ସେଣ୍ଟ ଜର୍ଜ ନୁହଁ । ମୁଁ ଜାଣେ ତୁମେ ମୋ ଡ୍ରାଗନକୁ ମାରିବ ନାହିଁ । ତେବେ ସୀସାର ବିଶେଷଜ୍ଞ ସେଣ୍ଟ ସାର୍ଟର୍ଣ୍ଣିନସ୍ ହେଉଛନ୍ତି ପାଇପ ମିସ୍ତ୍ରୀମାନଙ୍କର ଗୁରୁ ଓ ରକ୍ଷକ । ଏଭିତରେ ସେ ପାଇପ ମିସ୍ତ୍ରୀଙ୍କ ଆଡ଼କୁ ଯାଦୁବାଡ଼ିକୁ ବୁଲାଉଥିଲେ । ପାଇପ ମିସ୍ତ୍ରୀଙ୍କ ଆଖି ପାଟି ଧୀରେ ଧୀରେ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲା ଓ ସେ ହସିବାକୁ ଆରମ୍ଭକଲେ । ସେ କହିଲେ, "ମହାଶୟ, ଧନ୍ୟବାଦ । କିନ୍ତୁ ମୁଁ ଚା' ପିଇକରି ଆସିଛି ।"

"ଓ ଅବଦୁଲ ମକ୍କର, ତାଙ୍କର କାର୍ଯ୍ୟ ତାଙ୍କୁ ନିଶ୍ଚୟ ତୃଷାର୍ତ୍ତ କରୁଛି ଏବଂ ଏହା ଲିଖିତି ଯେ ରାଜା ସୋଲମନ - ସେ ଶାନ୍ତିରେ ରୁହନ୍ତୁ - ପାନୀୟ ସହିତ ବନ୍ଧୁମାନଙ୍କୁ ଅଟକାଉଥିଲେ । ତେଣୁ ଆମ୍ଭର ପାଇପରକ୍ଷକ ବନ୍ଧୁଙ୍କ ପାଇଁ ଏକ ମଦ୍ୟପାତ୍ର ଅଣାଯାଉ ।"

"ପାଇପମିସ୍ତ୍ରୀ ମଦ ପିଇଲେ ଓ ତାଙ୍କ କାର୍ଯ୍ୟକୁ ଫେରିଗଲେ । ଲିକୀଙ୍କର ଯାଦୁ ସତ୍ତ୍ୱେ ଭୋଜିଟି ତାଙ୍କୁ ଅଜବ ପ୍ରକାରର ଲାଗିଲା । ତେଣୁ ସେଠାରୁ ଚାଲିଯିବାରେ ସେ ଦୁଃଖିତ ନ ଥିଲେ । କିଛି ଲୋକ ଏହିଭଳି ହିଁ ହୋଇଥା'ନ୍ତି ।"

ଏହା ପରେ ଆମେ ବିଭିନ୍ନ ପ୍ରକାରର ଖେଳ ଖେଳିଲୁ । ମୁଁ ସେ ସବୁ ବିଷୟରେ ତୁମଙ୍କୁ କହିବି ନାହିଁ, କାରଣ ମୁଁ ଭାବୁଛି ଏଭିତରେ ତୁମେ ଅନେକ କଥା ଶୁଣିଲଣି । ତେବେ ଖେଳ ଭିତରେ ସଇତାନ ମୋତେ ଧରିବାବେଳେ ମୋ ଲାଞ୍ଜର ପର କେତୋଟି ଛିଡ଼ି ଯାଇଥିଲା ଓ ଗୋଟିଏ ସ୍ୱତନ୍ତ୍ର ମନ୍ତ୍ର ସାହାଯ୍ୟରେ କଇଁଛର ବେଗ ବଢ଼ାଇ ଦିଆଯାଇଥିଲା । କଇଁଛ କେବେ ଏତେ ଜୋରରେ ଧାଇଁବାର ମୁଁ ଦେଖିନଥିଲି । ଏଇ କଇଁଛଟି ଦୌଡ଼ିବାରେ ଖୁବ୍ ଦକ୍ଷ ଥିଲା ଓ ରେସିଙ୍ଗ ଗାଡ଼ିର ଚାଳକ ପରି ସେ କଣ ବୁଲିଲାବେଳେ ଖସଡ଼ି ଯାଉଥିଲା ।

ତା'ପରେ ସଇତାନ କହିଲେ ଯେ ଗୋଟିଏ ଜରୁରୀ କାମ ପାଇଁ ତାଙ୍କୁ ଯିବାକୁହେବ । ନାଚିବାକୁ ଯିବାପାଇଁ ସ୍କଟଲ୍ୟାଣ୍ଡର ଜଣେ ଧର୍ମଯାଜକଙ୍କୁ ସେ ପ୍ରଲୋଭିତ କରିବାର ଥିଲା । ତାଙ୍କ ପାଇଁ ଏହା ଭାରି କଷ୍ଟ କାମ ଥିଲା ଓ ତାହା କରିବାକୁ ତାଙ୍କର ବିଶେଷ ଇଛା ନ ଥିଲା । ତଥାପି ତାଙ୍କୁ ଆଦେଶ ମାନିବାକୁ ହେବ । ଅନ୍ୟ କେତେଜଣ ମଧ୍ୟ ଯିବାକୁ ବାହାରିଲେ ।"

ଶ୍ରୀ ଲିକୀ କହିଲେ, "ସତେ ଏହା ତ ଦୁଃଖର କଥା । ତଥାପି ମୁଁ ଆଶା କରୁଛି ଯେ ଆପଣମାନେ ଭୋଜିଟିକୁ ଉପଭୋଗ କରିଥିବେ । ଆପଣମାନେ ଏବେ ନିଶ୍ଚୟ ନିଜ

ରୂପ ଫେରିପାଇବାକୁ ଚାହୁଁଥିବେ ବୋଲି ମୁଁ ଭାବୁଛି । ନହେଲେ ଲମ୍ବା ଥଣ୍ଟିଆ ଟୁକାନ ଓ କଇଁଛକୁ ଲଣ୍ଡନର ଚିଡିଆଖାନାରେ ପଞ୍ଜୁରୀ ମଧ୍ୟରେ ବନ୍ଦୀହୋଇ ରହିବାକୁ ପଡ଼ିବ ଓ ଦମକଳକୁ ଖୁବ୍ ଖଟିବାକୁ ହେବ । ତେବେ ଯିଏ ଚାହିଁବ ତାହାର ନାଁ ମୁଁ ବଦଳାଇ ଦେଇପାରିବି ।"

ସେକ୍ସପିୟର କହି ଉଠିଲେ, "ନାଁରେ ଅଛି ବା କ'ଣ? ଯେଉଁ ନାଁରେ ଡାକିଲେ ବି ଗୋଲାପ ଫୁଲ ଏକାଭଳି ମହକିବ ।" ଲିକୀ କହିଲେ, "ନାଁ, ଆଦୌ ନୁହେଁ । ଗୋଲାପକୁ ଯଦି ଆମେ ଛୋଟ ଗନ୍ଧଫୁଲ ବା ମାଛ-ଆଳୁ-ଭଜା ଫୁଲ ନାଁରେ ଡାକିବା ତେବେ ତାହା କେବେ ନିଜଭଳି ବାସିବ ନାହିଁ । ଆପଣ ଯେତିକି ଭାବୁଛନ୍ତି ପ୍ରକୃତରେ ନାଁର ମୂଲ୍ୟ ତା'ଠାରୁ ଅଧିକ । ମୁଁ ଫିପ୍ସ୍ ନାମରେ ଉତ୍ତର ଲଣ୍ଡନର ଜଣେ ଲୁହା ଦୋକାନୀଙ୍କୁ ଜାଣିଥିଲି । ସେ ତାଙ୍କ ଦୋକାନରେ ଖୁବ୍ ଖୁସିଥିଲେ ଓ ରାତ୍ରି ଭୋଜନ ପରେ ସେ ବୈଠକଖାନାରେ ଜୋତା ଖୋଲି ପେସେନ୍ସ୍ ଖେଳିବାକୁ ଭଲପା'ନ୍ତି । କିନ୍ତୁ ତାଙ୍କ ସ୍ତ୍ରୀ ତାଙ୍କୁ ସେମିତି କରିବାକୁ ଦିଅନ୍ତି ନାହିଁ । ସ୍ତ୍ରୀ କୁହନ୍ତି ଯେ ବୈଠକଖାନା ବାହାରେ ଜୋତା ଖୋଲିବାକୁ ହେବ ଓ ପେସେନ୍ସ୍ ହେଉଛି ଗୋଟିଏ ମୂଲ୍ୟହୀନ ଖେଳ । ଅବଶ୍ୟ ଏହା ସତ ଯେ ପେସେନ୍ସ୍ ଖେଳର କିଛି ବିଶେଷ ମୂଲ୍ୟନାହିଁ, କିନ୍ତୁ ଅନ୍ୟ ବହୁତ ପ୍ରକାରର ଖେଳ ମଧ୍ୟ ତାହାପରି ମୂଲ୍ୟହୀନ । ତେଣୁ ଫିପ୍ସ୍ କହିଲେ, 'ଚାଲ ପରସ୍ପରକୁ ଛାଡ଼ପତ୍ର ଦେଇଦେବା ।' ମାତ୍ର ତାଙ୍କ ସ୍ତ୍ରୀ ସେଥିରେ ବି ରାଜି ନ ଥିଲେ ।"

"ତେଣୁ ଶ୍ରୀ ଫିପ୍ସ୍ ଗୋଟିଏ ଯୋଜନା ବାହରକଲେ । ପ୍ରଥମେ ସେ ଲଣ୍ଡନରେ ସବୁଠାରୁ ବେଶୀ ତାର ଜାଲି ଓ ହାତୁଡ଼ି ବିକି ଖୁବ୍ ଧନୀ ହୋଇଗଲେ । ତା'ପରେ ସେ ଏପିଙ୍ଗ ଠାରୁ କେମ୍ବ୍ରିଜ ଯିବା ବାଟରେ ପଡୁଥିବା ଅଗ୍ଲି ନାମକ ଗୋଟିଏ ସୁନ୍ଦର ଜାଗାରେ ଏକ ଘର କିଣିଲେ । ସେଠାରେ ସେ ଗୀର୍ଜା, ଡାକ୍ତରଖାନା, ବିଦ୍ୟାଳୟ, ଉଦାର ପନ୍ଥୀ, ସମାଜ ମଙ୍ଗଳ କର୍ମୀ ଆଦିଙ୍କୁ ଏତେ ଟଙ୍କା ଦେଲେ ଯେ ସେମାନେ ତାଙ୍କୁ ସମ୍ଭ୍ରାନ୍ତ ଲର୍ଡ ପଦବୀ ଦେବାକୁ ଚାହିଁଲେ । କେଉଁ ନାମରେ ସମ୍ବୋଧନ କରାଯିବ ତାହା ତାଙ୍କୁ ପଚରାଯିବାରୁ ସେ ନିଜକୁ ଲର୍ଡ ଅଗ୍ଲି (ଅସୁନ୍ଦର) ନାମରେ ପରିଚିତ ହେବାକୁ ମନ କଲେ । ରାଜା ଖୁବ୍ ହସିଲେ, କିନ୍ତୁ ଶେଷକୁ ଫିପ୍ସଙ୍କ କଥା ହିଁ ରହିଲା ।"

"ଏହା ଫଳରେ ତାଙ୍କ ପତ୍ନୀଙ୍କୁ ସମସ୍ତେ ଲେଡି ଅଗ୍ଲି (ଅସୁନ୍ଦରୀ) ନାଁରେ ଡାକିବାକୁ ଲାଗିଲେ । କିନ୍ତୁ ଏହା ତାଙ୍କୁ ଆଦୌ ଭଲ ଲାଗିଲାନାହିଁ । ସେ ତେଣୁ ଫିପ୍ସ୍ଙ୍କୁ ଛାଡ଼ପତ୍ର ଦେଇଦେଲେ ଓ ଲଭଲୀ (ଖୁବ୍ ସୁନ୍ଦର) ନାମରେ ଜଣେ ଲୋକଙ୍କୁ ବାହାହେଲେ । ମୁଁ ଭାବୁଛି ଯେ ତା'ପରେ ସେ ସୁଖରେ ରହିଥିବେ । ଲର୍ଡ ଅଗ୍ଲି ମଧ୍ୟ କେବଳ ଦୋକାନଟି ନିଜ ପାଇଁ ରଖିଲେ ଓ ତାଙ୍କର ବାକି ସବୁ ପଇସା ବାଣ୍ଟିଦେଲେ ।

ଏବେ ସେ ପ୍ରତି ସନ୍ଧ୍ୟାରେ ଖୋଲିଦେଇ ପେସେନ୍ସ୍ ଖେଳି ପାରୁଛନ୍ତି । କିନ୍ତୁ ଯଦି ସେ ଲର୍ଡ ଗୋଲ୍ଡର୍ସ୍ ଗ୍ରିନ୍ ହେବେ କିମ୍ବା ଲର୍ଡ ମୋର୍ଟନ-ଇନ-ଦି-ମାର୍ଘ ବା ସେଇଭଳି ଆଉ କ'ଣ ହୋଇଥା'ନ୍ତେ, ତେବେ ପରିସ୍ଥିତି ନିଶ୍ଚୟ ଅଲଗା ହୋଇଥା'ନ୍ତା ।"

କେବଳ ଦୁଇଟି ନାଁ ବଦଳାଇଦେବାକୁ ଶ୍ରୀ ଲିକୀ ଅନୁରୋଧ ପାଇଲେ । ଭିକ୍ଟୋରିଆ ନାମକ ଝିଅ ଇରିନା, ଯାହାର ଅର୍ଥ ଶାନ୍ତି, ହେଲା ଓ ବାଳକ ଅଗଷ୍ଟସ୍ ତା'ର ନାଁ ବଦଳାଇ ଟମ୍ ହୋଇଗଲା ।

ତା'ପରେ ଆମେ ସମସ୍ତେ ଗୋଟିଏ ଧାଡ଼ିରେ ଠିଆ ହେଲୁ ଓ ଶ୍ରୀ ଲିକୀ ଅବ୍ଦୁଲ ମଙ୍କରକୁ ଆମର ଫଟୋ ଉଠାଇବାକୁ କହିଲେ । କିନ୍ତୁ ଫଟୋ ଏତେ ଭଲ ଉଠିଲା ନାହିଁ, କାରଣ ପ୍ରଜାପତିଟି ମଝିରେ ତା'ର ଡେଣା ହଲାଇଦେଲା ଓ ପମ୍ପେ ଟାଙ୍କିରୁ ପେଟ୍ରୋଲ ପିଇବାକୁ ଚେଷ୍ଟା କଲାବେଳେ ନିଆଁ ଲାଗିଯିବାର ଦେଖି ବାଳକଟି ହସିବାରେ ଲାଗିଲା ।

ଯେତେବେଳେ ଆମଙ୍କୁ ଫଟୋ ଦେଖାଗଲା, ଆମେ ସମସ୍ତେ ଆଖି ବୁଜି ଦେଲୁ ବା ଆମର ଆଲୁଅକୁ ଲିଭାଇ ଦେଲୁ । କେବଳ ପରମାଣୁକୁ ଜେନନ୍ (ତାହା ଯାହା ବି ହେଉ) ଭଳି ଦେଖାଯିବାକୁ କୁହାଗଲା । ଆମେ ଆଖି ବୁଜିଥିଲାବେଳେ ଲିକୀ କ'ଣ କଲେ କେଜାଣି ଆଖି ଖୋଲିଲା ବେଳକୁ ଆମେ ସମସ୍ତେ ସାଧାରଣ ମଣିଷ ହୋଇ ଯାଇଥିଲୁ । ଆମ ଭିତରୁ କେତେ କୁହୁକ ଗାଲିଚାରେ, କେତେକ ଭୂଇଁତଳ ଟ୍ରେନ୍‌ରେ ଓ ଆଉ କେହି କେହି ବସ୍‌ରେ ନିଜ ନିଜ ଘରକୁ ଫେରିଗଲେ । ମୁଁ ଚାଲି ଚାଲି ଫେରିଲି ଓ ଘରେ ପହଞ୍ଚି ଦେଖିଲି ଯେ ସେଠାରେ ମୋ ପାଇଁ ଗୋଟିଏ ଉପହାର ଅପେକ୍ଷାକରି ରହିଛି । ସେଥିରେ ଧୂମକେତୁ ବିଷୟରେ ଗୋଟିଏ ଓ ପକ୍ଷୀମାନଙ୍କ ବିଷୟରେ ଆଉ ଗୋଟିଏ ସୁନ୍ଦର ବହି ରହିଛି । ପକ୍ଷୀ ବହିଟିରେ ଚାରି ପ୍ରକାରର ଲମ୍ବା ଥଣ୍ଟିଆ ଟୁକାନ୍ ପକ୍ଷୀଙ୍କର ରଙ୍ଗୀନ ଚିତ୍ର ରହିଥିଲା, ଆଉ ସେଥିରୁ ଗୋଟିଏ ଥିଲା ମୁଁ ହୋଇଥିବା ଟୁକାନ୍‌ର ।

ସେଦିନଠାରୁ ମୁଁ ଲିକୀଙ୍କୁ ଆଉ ଦେଖି ନାହିଁ । ମୋର ଦେଖା ହେଲେ ମୁଁ ତୁମକୁ କହିବି । କିନ୍ତୁ ମୁଁ ଭାବୁଛି ଯେ ରାଫେଲଙ୍କୁ ମୁଁ ଗତ ସପ୍ତାହରେ ଦେଖିଥିଲି । ସେ ଜଣେ ସାଧାରଣ ଶ୍ରମିକ ପରି ପୋଷାକ ପିନ୍ଧିଥିଲେ ଓ ରାସ୍ତାରେ ପଡ଼ିଯାଇ ଗୋଇଠି ମୋଡ଼ିହୋଇଥିବା ଜଣେ ବୃଦ୍ଧା ମହିଳାଙ୍କୁ ସାହାଯ୍ୟ କରୁଥିଲେ । ତେଣୁ ମୁଁ ଭାବୁଛି ଯେ ଲିକୀଙ୍କୁ ପୁଣି ନିଶ୍ଚୟ ଦେଖିବି ।

# ମୁଷା

ଅନେକ ଦିନ ତଳେ ସ୍ମିଥ ନାମରେ ଜଣେ ଲୋକ ଥିଲେ । ସେ ଜଣେ ପରିବା ବିକାଳି ଥିଲେ ଓ କ୍ଲାଫାମ୍‌ରେ ରହୁଥିଲେ । ତାଙ୍କର ଥିଲେ ଚାରୋଟି ପୁଅ । ସବା ବଡ଼ ପୁଅର ନାମ ରାଜାଙ୍କ ନାମ ଅନୁସାରେ ଜର୍ଜ ଦିଆଯାଇଥିଲା ଓ ସେ ହିଁ ପିତାଙ୍କ ଦୋକାନଟି ଉତ୍ତରାଧୀକାରୀ ଭାବରେ ପାଇବ ବୋଲି ଠିକ ହୋଇଥିଲା । ତେଣୁ ସ୍କୁଲରେ ପଢୁଥିଲାବେଳେ ସେ ଉଦ୍ଭିଦ ବିଜ୍ଞାନର ସ୍ୱତନ୍ତ୍ର ଶ୍ରେଣୀରେ ଯୋଗ ଦେଉଥିଲେ । ଶହେସତାବନ ପ୍ରକାର ବନ୍ଧାକୋବି ଓ ଚଉରାଳିଶ ପ୍ରକାରର ସାଲାଡ଼ ପତ୍ର ବିଷୟରେ ସେ ପାଠ ପଢିଥିଲେ । ପ୍ରାଣୀ ବିଜ୍ଞାନ ଶ୍ରେଣୀରେ ମଧ୍ୟ ଯୋଗଦେଇ ସେ ସତସ୍ତରୀ



ପ୍ରକାରର ସଁବାଳୁଆ ବିଷୟରେ ଜାଣିଥିଲେ ଯେଉଁମାନେ କୋବି ଖାଇଯା'ନ୍ତି । ସାବୁନ ପାଣି ପକାଇ ଦେଲେ ସବୁଜ ରଙ୍ଗର ସଁବାଳୁଆ ଓ ଧୂଆଁପତ୍ର ରସରେ ପଟା ପଟା ଗାର ପଡ଼ିଥିବା ସଁବାଳୁଆ କିପରି ବାହାରି ଆସନ୍ତି ସେ ବିଷୟରେ ସେ ପଢିଥିଲେ । ଖୁବ୍ ବଡ଼ ମୋଟା ଧୂସର ସଁବାଳୁଆଗୁଡ଼ାକ ମଧ୍ୟ ଲୁଣ ପାଣିରେ ବାହାରି ଆସନ୍ତି । ତେଣୁ ସେ ବଡ଼ ହୋଇଯିବାରୁ ଲଣ୍ଡନରେ ପନିପରିବା ବିକାଳିଙ୍କ ଭିତରେ ସବୁଠାରୁ ଭଲ ବୋଲି ନାଁ କରିଥିଲେ ଏବଂ ତାଙ୍କ କୋବିରେ କେବେ ସଁବାଳୁଆ ଦେଖା ଯାଉନଥିଲେ ।

କିନ୍ତୁ ଶ୍ରୀ ସ୍ମିଥଙ୍କର ମାତ୍ର ଗୋଟିଏ ଦୋକାନ ଥିଲା । ତେଣୁ ଅନ୍ୟ ତିନି ପୁଅ ଅଲଗା କିଛି ଧନ୍ଦା ଖୋଜିବାରେ ଲାଗିଥିଲେ । ଦ୍ୱିତୀୟ ପୁତ୍ର ଜିମ୍‌ଙ୍କର ପ୍ରକୃତ ନାଁ ଥିଲା ଜେମ୍‌ସ । ସ୍କୁଲରେ ସେ ଇଂରାଜୀ ରଚନାରେ ସବୁତକ ପୁରସ୍କାର ଜିଣୁଥିଲେ । ସେ ମଧ୍ୟ ସ୍କୁଲ ଫୁଟବଲ୍ ଦଳର କ୍ୟାପ୍‌ଟେନ୍ ଥିଲେ ଓ ହାଫ୍‌ବ୍ୟାକ୍ ଭାବରେ ଖେଳୁଥିଲେ । ସେ ଅନେକ ଚତୁର ଚାଲ୍ ଜାଣିଥିଲେ ଓ ଶିକ୍ଷକମାନଙ୍କ ଉପରେ ତାହା ଖେଳୁଥିଲେ । ଦିନେ ସେ ଚକ୍ ଭିତରେ ଗୋଟିଏ ଦିଆସିଲି କାଠିର ମୁଣ୍ଡି ପୂରାଇ ଦେଇଥିଲେ । ତାହା ପୁଣି ନିରାପଦ ଦିଆସିଲି କାଠି ନ ଥିଲା, ବରଂ ତାହା ନୀଳ-ଧଳା ରଙ୍ଗର ସାଧାରଣ ଦିଆସିଲି



ଥିଲା ଯାହାକୁ ଯେକୌଣସି ଜାଗାରେ ଘଷିକରି ଜଳାଯାଇପାରେ । ଯେତେବେଳେ ଶିକ୍ଷକ କଳାପଟାରେ ଲେଖିବା ଆରମ୍ଭ କଲେ ସେ ଦିଆସିଲି କାଠିଟି ଜଳି ଉଠିଲା, ଆଉ ପାଞ୍ଚ ମିନିଟ ପାଇଁ କେହି କିଛି କାମ କଲେନାହିଁ । ଆଉ ଦିନେ ସେ ସବୁ କାଳି ଘଡ଼ିରେ ମେଥିଲେଟେଡ୍ ସ୍ପିରିଟ ପୂରାଇ ଦେଲେ, ତେଣୁ କଲମରେ କାଳି ଜମା ଧରିଲା ନାହିଁ । ସବୁତକ କାଳି ବଦଳାଇବା ପାଇଁ ଶିକ୍ଷକଙ୍କୁ ଅଧ ଘଣ୍ଟାଏ ଲାଗିଗଲା । ତେଣୁ ସେହି ପିରିଅଡ୍‌ରେ ବେଶୀ କିଛି ଫରାସୀ ଭାଷା ପଢାହୋଇ ପାରିନଥିଲା । ଜିମ୍‌ଙ୍କୁ ଫରାସୀ ଭାଷା ଭଲ ଲାଗୁନଥିବାରୁ ସେ ଖୁସି ହେଲେ । ତାଲାର କଣାରେ ପୁଟୁଣି ପୂରାଇବା ବା ଶିକ୍ଷକଙ୍କ ମେଜରେ ମଲା ମୂଷା ରଖିବା ଭଳି ମାମୁଲି ମଜା ସେ କେବେ କରୁନଥିଲେ ।

ତୃତୀୟ ପୁତ୍ରଙ୍କ ନାମ ଥିଲା ଚାର୍ଲସ । ସେ ଇତିହାସ ଓ ଗଣିତରେ ମୋଟାମୋଟି ଭାବରେ ଭଲ କରୁଥିଲେ ଓ ଧୀର ବାମହାତି ବୋଲର ଭାବରେ କ୍ରିକେଟ ଦଳରେ ମିଶିଥିଲେ । କିନ୍ତୁ ଯେଉଁଥିରେ ସେ ପ୍ରକୃତରେ ଅତି ଭଲ ଥିଲେ ତାହା ହେଲା ରସାୟନ ବିଜ୍ଞାନ । ମୁଁ ଜାଣିବାରେ ଆମ ସ୍କୁଲରେ ଓ ଆଖପାଖର ସବୁ ସ୍କୁଲ ଭିତରେ ସେ ଥିଲେ ଏକମାତ୍ର ପିଲା ଯେ କି ପାରାଡାଇମିଥାଇଲ୍‌ଆମିନୋବେନଜ୍ଞାଲ୍‌ଡିହାଇଡ୍ ତିଆରି କରିଥିଲେ । ଏପରିକି ଅତି କଷ୍ଟସାଧ୍ୟ ଆରାବିଟଲ୍ (ରୋବିଟ୍ ବା ଠେକୁଆ ସହିତ ଏହି ରାସାୟନିକର କୌଣସି ସମ୍ପର୍କ ନାହିଁ) ମଧ୍ୟ ସେ ତିଆରି କରିପାରୁଥିଲେ । ସେ ଚାହିଁଥିଲେ ବିଭିନ୍ନ ପ୍ରକାରର କଡ଼ା ଦୁର୍ଗନ୍ଧ ସୃଷ୍ଟି କରିପାରିଥା'ନ୍ତେ, କାରଣ ସେ ସବୁର ରସାୟନ ତାଙ୍କୁ ଜଣାଥିଲା । କିନ୍ତୁ ସେ ବେଶ୍ ଭଲ ପିଲା ଥିଲେ, ତେଣୁ ସେ ଏମିତି



ଖରାପ କାମ କରୁନଥିଲେ । ଏହା ଛଡ଼ା ଏଭଳି କାମ କରିଥିଲେ ତାଙ୍କୁ ରସାୟନ ବିଜ୍ଞାନ ପଢ଼ିବାକୁ ଦିଆଯାଇ ନ ଥା'ନ୍ତା । କିନ୍ତୁ ସେ ରସାୟନ ବିଜ୍ଞାନରେ ହିଁ ଜୀବନସାରା କାମ କରିବାକୁ ଚାହୁଁଥିଲେ ।

ଚତୁର୍ଥ ପୁତ୍ରର ନାଁ ଥିଲା ଜ୍ୟାକ୍ । ସେ କୌଣସି ପାଠ ବିଷୟରେ କିମ୍ବା ଖେଳରେ ଭଲ କରୁ ନ ଥିଲେ । ଏମିତିକି ସେ ବଲକୁ ସିଧା ଆଗରୁ ମାରି ପାରୁନଥିଲେ ଓ କ୍ରିକେଟରେ ଫିଲ୍‌ଡିଙ୍ଗ କଲାବେଳେ ନିଦରେ ଶୋଇଯାଉଥିଲେ । ସେ କେବଳ ବେତାର ଧନ୍ଦାରେ ଭଲ ଥିଲେ । ତାଙ୍କ ଘରେ ଥିବା ରେଡ଼ିଓର ଭାଲ୍‌ଭ୍ ଛଡ଼ା ସବୁ ସେ ସଜାଡ଼ି ପାରୁଥିଲେ ଓ ଏ ଗପ ଟିର ଆରମ୍ଭ ବେଳକୁ ସେ ଭାଲ୍‌ଭ୍ ସଜାଡ଼ିବା କାମ ଶିଖୁଥିଲେ । ମାଟିଲଦା ନାମରେ ତା'ର ଜଣେ ଅଣଆଈ ଥିଲେ । ସେ ଏତେ ବୁଢ଼ୀ ଥିଲେ ଯେ ଲଣ୍ଡନରୁ ଡୋଭର ଯାଏ ରେଳରାସ୍ତା ତିଆରି ବେଳର କଥା ତାଙ୍କର ମନେଥିଲା । ସେ ଚାଲି ପାରୁନଥିଲେ ଓ ସବୁବେଳେ ଶୋଇରହୁଥିଲେ । ସୁବିଧାରେ ଶୁଣିବା ପାଇଁ ଜ୍ୟାକ୍ ତାଙ୍କପାଇଁ ହଳେ ଇୟର-ଫୋନ ଗଢ଼ି ଦେଇଥିଲେ, ତେଣୁ ସେ କହୁଥିଲେ ଯେ ରାଣୀ ଭିକ୍‌ଟୋରିଆଙ୍କ ସମୟରୁ ସେ ଏତେ ସୁଖୀ ହୋଇନଥିଲେ । ଅନ୍ୟ ପ୍ରକାରର ବୈଦ୍ୟୁତିକ ଉପକରଣ ବିଷୟରେ ମଧ୍ୟ ଜ୍ୟାକ୍ ବେଶ୍ କିଛି ଜାଣିଥିଲେ । ବିନା ଖର୍ଚ୍ଚରେ ସେ ତାଙ୍କ ଘରକୁ ବିଦ୍ୟୁତ ଆଣିବାର ବ୍ୟବସ୍ଥା କରିଦେଇଥିଲେ । ଫଳରେ ଏକ ସପ୍ତାହ ଧରି ତାଙ୍କ ମିଟରରେ କିଛି ଉଠିଲା ନାହିଁ । ଏହି କଥା ଜାଣିବାରୁ ତାଙ୍କ ବାପା କହିଲେ, "ଆମେ



ଏମିତି କରିବା ଉଚିତ ନୁହେଁ । ଏହା ବିଦ୍ୟୁତ କମ୍ପାନୀ ଠାରୁ ଚୋରିର କଥା ।" ଜ୍ୟାକ୍ କହିଲେ, "ଏହା ଚୋରି ବୋଲି ମୁଁ ଭାବୁ ନାହିଁ । କମ୍ପାନୀ ଗୋଟିଏ ମଣିଷ ନୁହେଁ । ତା'ଛଡ଼ା ବିଦ୍ୟୁତ ଶକ୍ତି ଆମର ଆଲୁଅ ଭିତର ଦେଇ ପୁଣି ଲାଇନ୍‌କୁ ଚାଲିଯାଉଛି । ତେଣୁ ଆମେ ତ ତାକୁ ରଖୁ ନାହେଁ, ଆମେ ଖାଲି କିଛି ସମୟ ପାଇଁ ଧାର ଆଣୁଛେ ।" କିନ୍ତୁ ବାପା ସେ ଯନ୍ତ୍ରଟିକୁ କଢ଼ାଇ ଦେଲେ ଓ ଜଣେ ସଚ୍ଚୋଟ ଲୋକ ଭାବରେ ବିଦ୍ୟୁତ କମ୍ପାନୀର ଦେୟ ଦେଇଥିଲେ ।

ସ୍ମିଥଙ୍କର ଗୋଟିଏ ଝିଅ ଥିଲା । ନାଁ ତା'ର ଲୁସିଲ୍ । କିନ୍ତୁ ସମସ୍ତେ ତାକୁ ପଜ୍‌ଜୀ ନାଁରେ ଡାକୁଥିଲେ । ସେ ଏହି ଗପରେ ପ୍ରାୟ ଆସୁନାହିଁ । ମୁଁ ତେଣୁ ଗପଟି ଶେଷ ହେବା ଯାଏଁ ତାଙ୍କ କଥା ଆଉ କିଛି କହିବି ନାହିଁ । କେବଳ ଏତିକି କହିଲେ ଚଳିବ ଯେ ସେ ଛୋଟ ଥିଲାବେଳେ ତା'ର ଆଗ ଦାନ୍ତଗୁଡ଼ିକ ବାହାରକୁ ରହୁଥିଲା । ମାତ୍ର ପରେ ସେଗୁଡ଼ିକୁ ଠିକ କରାଯାଇ ପାରିଥିଲା ।

ସେହି ସମୟରେ ଲଣ୍ଡନ ବନ୍ଦରରେ ମୂଷାମାନଙ୍କର ସଂଖ୍ୟା ବହୁତ ବଢ଼ିଯାଇଥିଲା । ସେ ମୂଷାଗୁଡ଼ିକ ବିଶେଷ ଭାବରେ ଭୟଙ୍କର ଥିଲେ । ତାଙ୍କ ପୂର୍ବପୁରୁଷ ହଙ୍ଗ୍‌କଙ୍ଗ୍‌ରୁ ଚା', ଅଦା, ରେଶମ ଓ ଚାଉଳ ସହିତ ଷ୍ଟିମରରେ ଆସିଥିଲେ । ଏହି ମୂଷାଗୁଡ଼ିକ ଜାହାଜରେ ଲଣ୍ଡନକୁ ଆସୁଥିବା ସବୁ ପ୍ରକାରର ଖାଦ୍ୟ ଖାଇଯାଉଥିଲେ । ଇଂଲଣ୍ଡରେ ଉତ୍ପନ୍ନ ହେଉଥିବା ଖାଦ୍ୟ ଏଠାର ଲୋକମାନଙ୍କ ପାଇଁ ଯଥେଷ୍ଟ ହେଉନଥିଲା, ତେଣୁ ଅନ୍ୟ ଦେଶମାନଙ୍କରୁ ବିଭିନ୍ନ ଜିନିଷ ଆଣିବାକୁ ପଡୁଥିଲା । ଜାହାଜରେ କାନାଡ଼ାରୁ ଗହମ, ହଲାଣ୍ଡରୁ ଛେନା, ନିଉଜିଲାଣ୍ଡରୁ ମେଣ୍ଢାମାଂସ ଓ ଆର୍ଜେଣ୍ଟିନାରୁ ଗୋମାଂସ ଇତ୍ୟାଦି ଆସୁଥିଲା ଏବଂ ମୂଷାମାନେ ଏସବୁ ଖାଇଦେଉଥିଲେ । ଆହୁରି ମଧ୍ୟ ସେମାନେ ପାରସ୍ୟରୁ ଆସୁଥିବା ଗାଲିଚାକୁ କାଟିନେଇ ସେଥିରେ ବସା ବନାଉଥିଲେ ଏବଂ ଚୀନ ଦେଶର ରେଶମ କୋଟ୍‌ରେ ଗୋଡ଼ ପୋଛୁଥିଲେ ।

"ଲଣ୍ଡନରେ ଥିବା ସବୁ ବନ୍ଦରର ମୁଖ୍ୟଙ୍କୁ ଲଣ୍ଡନ ବନ୍ଦର କର୍ତ୍ତୃପକ୍ଷର ଅଧ୍ୟକ୍ଷ କୁହାଯାଏ । ସେ ପ୍ରକୃତରେ ଜଣେ ବଡ଼ ଲୋକ । ଟାୱାରହିଲ୍ ନିକଟରେ ଥିବା ତାଙ୍କର ଅଫିସ ବକିଙ୍ଗହାମ ପ୍ରାସାଦ ପରି ଖୁବ୍ ବଡ଼ । ସେ ମୂଷାଙ୍କ ଉପରେ ଭୀଷଣ ରାଗିଗଲେ । କାରଣ ଜାହାଜରେ ଆସୁଥିବା ମାଲ ସବୁର ଯତ୍ନନେବା ଦାୟିତ୍ୱ ତାଙ୍କର ଥିଲା । ସେସବୁ ମାଲପତ୍ର ଜାହାଜରୁ ଓହ୍ଲାଯିବାଠାରୁ ଟ୍ରେନ, ଟ୍ରକ ଓ ଅନ୍ୟାନ୍ୟ ଗାଡ଼ିରେ ବିଭିନ୍ନ ସ୍ଥାନକୁ ପଠାଯିବା ପର୍ଯ୍ୟନ୍ତ ତାଙ୍କ ଦାୟିତ୍ୱରେ ରହୁଥିଲା । ତେଣୁ ମୂଷାମାନେ ଯାହାସବୁ ଖାଉଥିଲେ ତା'ର ମୂଲ୍ୟ ତାଙ୍କୁ ହିଁ ଦେବାକୁ ପଡୁଥିଲା । ଏହାର ପ୍ରତିକାର ପାଇଁ ସେ ଲଣ୍ଡନର ସବୁଠୁ ଭଲ ମୂଷାଧରାଳିଙ୍କୁ ଆଣିଲେ । କିନ୍ତୁ ସେମାନେ ମାତ୍ର ଅଳ୍ପ

କେତେ ଶହ ମୂଷା ଧରିଥିଲେ । କାରଣ ସେ ମୂଷାଗୁଡ଼ିକ ଭାରି ଧୂର୍ତ୍ତ ଥିଲେ । ସେ ମୂଷାମାନଙ୍କର ରାଜା ଗୋଟିଏ ଅତି ଗଭୀର ଗାତରେ ରହୁଥିଲେ ଓ ଅନ୍ୟମାନେ ତାଙ୍କ ପାଇଁ ଖୁବ୍ ଭଲ ଭଲ ଖାଦ୍ୟ ଆଣିଦେଉଥିଲେ । ସେମାନେ ତାଙ୍କ ପାଇଁ ସୁଇଜରଲ୍ୟାଣ୍ଡରୁ ଆସୁଥିବା ଚକୋଲେଟ, ଫ୍ରାନ୍‌ସରୁ ଆସୁଥିବା ଟର୍କୀମାଂସ, ଆରଜିୟର୍ସର ଖଜୁରି କୋଳି ଇତ୍ୟାଦି ଆଣୁଥିଲେ । କେତେବେଳେ କ'ଣ କରିବାକୁ ହେବ ସେକଥା ସେ ତାଙ୍କ ପ୍ରଜା ମୂଷାମାନଙ୍କୁ ବତାଇ ଦେଉଥିଲେ । କୌଣସି ମୂଷା ଯନ୍ତାରେ ପଡ଼ିଗଲେ ସେ ସ୍ୱତନ୍ତ୍ର ଦୂତ ପଠାଇ ଅନ୍ୟମାନଙ୍କୁ ବିପଦର ସୂଚନା ଦେଉଥିଲେ । ଦଶହଜାର ଯୁବ ଓ ସାହସୀ ମୂଷାଙ୍କର ଏକ ବିରାଟ ସେନା ବାହିନୀ ତାଙ୍କ ହାତରେ ଥିଲା । ମୂଷାଙ୍କ ବିରୁଦ୍ଧରେ କେହି କୌଣସି ଜନ୍ତୁ ପଠାଇଲେ, ସେମାନେ ପ୍ରବଳ ଯୁଦ୍ଧ କରୁଥିଲେ । ଗୋଟିଏ ଟେରିୟର କୁକୁର ଗୋଟିଏ ଦୁଇଟି ମୂଷା ସହଜରେ ମାରିପାରେ । ମାତ୍ର ଯଦି ଶହ ଶହ ମୂଷା ଏକାବେଳକେ ତା'ଆଡ଼କୁ ଧାଇଁଯାନ୍ତି, ସେ ତିନି ଚାରିଟାଙ୍କୁ ମାରିଲା ବେଳକୁ ଅନ୍ୟମାନେ ମିଶିଯାଇ ଶେଷରେ ତାକୁ ମାରିଦିଅନ୍ତି । ସବୁଠାରୁ ଟାଣୁଆ ଦାନ୍ତଥିବା ମୂଷାଙ୍କୁ ଇଞ୍ଜିନିୟର ଭାବରେ ତାଲିମ ଦିଆଯାଇଥାଏ ଏବଂ ସେମାନେ ମୂଷାଯନ୍ତାର ତାରଜାଲିକୁ କାଟି ବନ୍ଦୀ ମୂଷାମାନଙ୍କୁ ଖଲାସ କରି ଦେଇପାରନ୍ତି ।

ଗୋଟିଏ ମାସରେ ଏହି ମୂଷିକ ବାହିନୀ ଏକଶହ ଏକାଅଶୀଟି ବିରାଡ଼ି, ଅଣଚାଶଟି କୁକୁର ଓ ପଞ୍ଚାନବେଟି ବଣୁଆ ବିରାଡ଼ି ମାରି ଦେଇଥିଲେ । ସେମାନେ ଆହୁରି କେତେ ଜନ୍ତୁଙ୍କୁ ଏତେ ଗୁରୁତର ଭାବରେ ଖଣ୍ଡିଆଖାବରା କରିପକାଇଥିଲେ ଯେ



ସେମାନେ ମୂଷାକୁ ଦେଖିବା ତ ଦୂରର କଥା, ମୂଷାର ଗନ୍ଧ ପାଇଲେ ବି ଦଉଡ଼ି ପଳାଉଥିଲେ । ଆହୁରି ମଧ୍ୟ ଏହି ବାହିନୀ ୬୧୮ଟି ଯନ୍ତା କାଟିକରି ୭୪୨ଟି ମୂଷାଙ୍କୁ ମୁକୁଳାଇ ଦେଇଥିଲେ । ଏହି ଭାବରେ ମୂଷାଧରାଳିମାନେ ସେମାନଙ୍କର ଭଲ ଭଲ କୁକୁର, ବଣୁଆ ବିରାଡ଼ି ଓ ଯନ୍ତା ହରାଇଥିଲେ ଏବଂ ହତାଶ ହୋଇ ସେମାନଙ୍କର ଧନ୍ଦା ଛାଡ଼ିଦେଲେ । ବନ୍ଦରର ଲୋକମାନେ ଔଷଧ ଦୋକାନରୁ ସବୁପ୍ରକାର ମୂଷାବିଷ କିଣି ବିଭିନ୍ନ ପ୍ରକାର ଖାଦ୍ୟରେ ମିଶାଇ ଚାରିଆଡ଼େ ରଖିଲେ । କିନ୍ତୁ ମୂଷିକରାଜ ହୁକୁମ ଦେଲେ ଯେ କୌଣସି ମୂଷା ବାହାରେ ପଡ଼ିଥିବା ଖାଦ୍ୟ ଛୁଇଁବେ ନାହିଁ । କେବଳ ବସ୍ତା, ପିମ୍ପା ବା ପେଟି ଭିତରୁ ସିଧା ବାହାରୁଥିବା ଖାଦ୍ୟ ହିଁ ଖିଆଯାଇ ପାରିବ । ତେଣୁ ମାତ୍ର ଅଳ୍ପ କେତୋଟି ଅବାଧ୍ୟ ମୂଷା ବିଷାକ୍ତ ଖାଦ୍ୟ ଖାଇ ମରିଥିଲେ । କୁକୁର, ବିରାଡ଼ି ଓ ଯନ୍ତା ଭଳି ବିଷ ମଧ୍ୟ କିଛି କାମ ଦେଲା ନାହିଁ ।

ବନ୍ଦର କର୍ତ୍ତୃପକ୍ଷର ଅଧ୍ୟକ୍ଷ ତାଙ୍କ ଅଫିସର ବିରାଟ ସଭାଗୃହରେ ଗୋଟିଏ ସଭା ବସାଇ କହିଲେ, "ମୂଷାଙ୍କୁ ଦବାଇବା ପାଇଁ କ'ଣ କରାଯାଇପାରିବ ସେ ଦିଗରେ ଆପଣମାନେ କିଛି ଉପାୟ ବତାଇ ପାରିବେ କି?" ଉପାଧ୍ୟକ୍ଷ ଜଣାଇଲେ ଯେ ସବୁ ଖବର କାଗଜରେ ବିଜ୍ଞପ୍ତି ଦେଇ ସବୁ ପ୍ରକାରର ମତାମତ ମଗାଯିବା ଦରକାର । ତା'ପର ସପ୍ତାହରେ ସବୁ ଖବର କାଗଜରେ ସେହି ମର୍ମରେ ବିଜ୍ଞପ୍ତି ପ୍ରକାଶିତ ହେଲା । ପୂରା ଗୋଟିଏ ପୃଷ୍ଠାରେ ଏହା ପ୍ରକାଶ ପାଇଥିଲା ଓ ବଡ଼ ବଡ଼ ଅକ୍ଷରରେ ଛପା ହୋଇଥିଲା । ଫଳରେ ଇଂଲଣ୍ଡରେ ପ୍ରାୟ ସମସ୍ତେ ଏହାକୁ ପଢ଼ିଲେ । କେବଳ ଆଈ ମାଟିଲ୍ଡାଙ୍କ ଛଡ଼ା ସ୍ମିଥ୍ ପରିବାରର ସମସ୍ତେ ମଧ୍ୟ ତାହା ଦେଖିଲେ । ଆଈ ମାଟିଲ୍ଡା କେବେ ଖବର କାଗଜ ପଢ଼ନ୍ତି ନାହିଁ, କାରଣ ସେ ରେଡ଼ିଓରୁ ସବୁ ଖବର ଶୁଣନ୍ତି ।

ଏହି ବିଜ୍ଞାପନ ଆଗରେ ଖବର କାଗଜରେ ବାହାରୁଥିବା ଅନ୍ୟ ସବୁ ପ୍ରତିଯୋଗିତା ଶସ୍ତା ମନେହେଲା । ଲଣ୍ଡନ ବନ୍ଦର କର୍ତ୍ତୃପକ୍ଷର ଅଧ୍ୟକ୍ଷ ଘୋଷଣା କରିଥିଲେ ଯେ ଯେଉଁ ଲୋକ ବନ୍ଦରରୁ ମୂଷାମାନଙ୍କୁ ତଡ଼ିଦେଇପାରିବ, ସେ ନଗଦ ଏକ ଲକ୍ଷ ପାଉଣ୍ଡ ପାଇବ ଏବଂ ତାଙ୍କର ଏକମାତ୍ର କନ୍ୟାକୁ ବିବାହ କରିପାରିବେ । ଅବଶ୍ୟ ଆଗରୁ ଯଦି ସେ ବିବାହିତ ଥିବେ, ତେବେ ତାଙ୍କ ଝିଅକୁ ବାହା ହୋଇପାରିବେନାହିଁ । କିନ୍ତୁ ତାହା ବଦଳରେ ସାନ୍ତ୍ୱନାମୂଳକ ପୁରସ୍କାର ଭାବରେ ହୀରାର ଏକ ବଳା ପାଇବେ । ଏକ ଶହ ହଜାର ପାଉଣ୍ଡର ଏକ ଫଟୋ ମଧ୍ୟ ବିଜ୍ଞପ୍ତିରେ ଦିଆଯାଇଥିଲା - ତାହା ଅସଲ ସ୍ୱର୍ଣ୍ଣ ମୁଦ୍ରା ଥିଲା, କାଗଜର ନୋଟ ନୁହେଁ । ସେହି ଝିଅଙ୍କର ଫଟୋ ମଧ୍ୟ ସେଥିରେ ଥିଲା । ଦେଖିବାକୁ ସେ ଅତି ସୁନ୍ଦର ଥିଲେ ଏବଂ ତାଙ୍କର ଛୋଟ କୁଞ୍ଚୁକୁଞ୍ଚିଆ ସୁନେଲୀ କେଶ ଓ ନୀଳ ଆଖି ଥିଲା । ଏହାଛଡ଼ା ସେ ଭାଓଲିନ ବଜାଇ ପାରୁଥିଲେ

ଏବଂ ସ୍କେଟିଙ୍ଗ୍, ପହଁରା ଓ ରାନ୍ଧଣା ପାଇଁ ଅନେକ ପୁରସ୍କାର ପାଇଥିଲେ । କେବଳ ଏତିକି ସର୍ତ୍ତ ଥିଲା ଯେ ପ୍ରତିଯୋଗୀମାନେ ମୂଷାଙ୍କୁ ମାରିବା ପାଇଁ ନିଜର ଦରକାରୀ ଜିନିଷ ସବୁ ଆଣିବେ । ତେଣୁ ପ୍ରତିଯୋଗିତାରେ ଯୋଗଦେବା ପାଇଁ ମୂଷାମରା ଜିନିଷ ବାବଦରେ ପ୍ରଚୁର ଟଙ୍କା ଯୋଗାଡ଼ କରିବାକୁ ହେବ ।

ତଥାପି ବି ହଜାର ହଜାର ଲୋକ ଏଥିପାଇଁ ଆସିଲେ । ତା'ପର ଦିନ ସକାଳୁ ଅଧ୍ୟକ୍ଷଙ୍କ ପାଖକୁ ସବୁତକ ଚିଠି ବୋହିନେବାକୁ ତିନି ଜଣ ଅଧିକ ଡାକବାଲା ଦରକାର ପଡ଼ିଲେ । ଟେଲିଫୋନରେ ଏତେ ଲୋକ ଯୋଗାଯୋଗ କଲେ ଯେ ତାର ସବୁ ତରଳିଗଲା । ମାସ ମାସ ଧରି ସବୁପ୍ରକାରର ଲୋକ ସେମାନଙ୍କର ଭାଗ୍ୟ ପରୀକ୍ଷାରେ ଲାଗିଗଲେ । ସେମାନଙ୍କ ଭିତରେ ଥିଲେ ରସାୟନବିଦ୍ ଓ ଯାଦୁକର, କୀଟାଣୁବିଦ୍ ଓ କୁହୁକବିଦ୍, ପ୍ରାଣୀବିଜ୍ଞାନୀ ଓ ଆଧ୍ୟାତ୍ମିକବାଦୀ, ଏମିତିକି କିଛି ସିଂହଶିକାରୀ ମଧ୍ୟ । କିନ୍ତୁ ସେମାନେ ମାତ୍ର ଅଳ୍ପ କେତୋଟି ଲେଖାଁ ମୂଷା ମାରିଥିଲେ । ପୁଣି ଜାହାଜରୁ ମାଲ ଖଲାସ କରିବାରେ ସେମାନେ ବାଧା ଆଣିଲେ । ଫଳରେ ବହୁ ପରିମାଣର ମକା ଲଣ୍ଡନ ବଦଳରେ ଲିଭରପୁଲ, କାର୍‌ଡିଫ୍, ହଲ ଓ ସାଉଥ୍ ହାମ୍ପଟନ ବନ୍ଦରକୁ ପଠାଇଦିଆଗଲା ।

ଜିମ୍, ଚାର୍ଲସ ଓ ଜ୍ୟାକ୍ ସ୍ମିଥ ମଧ୍ୟ ସେମାନଙ୍କ ଭାଗ୍ୟ ପରୀକ୍ଷା କରିବାକୁ ବାହାରିଲେ । ଜିମ୍ ଭାବିଲେ ସେ ଯଦି ଗୋଟିଏ ସାଧାରଣ ଜିନିଷଭଳି ଦେଖାଯାଉଥିବା ମୂଷା ଯନ୍ତା ତିଆରି କରିଦେବେ ତେବେ ମୂଷାମାନଙ୍କୁ ବୋକା ବନାଇ ଦିଆଯାଇ ପାରିବ । ଠିକ ଯେମିତି ସେ ତାଙ୍କ ସ୍କୁଲରେ ଶିକ୍ଷକମାନଙ୍କୁ ବୋକା ବନାଉଥିଲେ । ସେ ଜାଣିଥିଲେ ଯେ ବନ୍ଦର ପାଖରେ ବହୁତ ପ୍ରକାରର ପୁରୁଣା ଟିଣ ଡବା ପଡ଼ିରହିଛି । ତେଣୁ ସେଭଳି ପୁରୁଣା ଟିଣରେ ଗୋଟିଏ ନୂଆ ଧରଣର ଯନ୍ତା ଗଢ଼ିଲେ । ସେହି ଟିଣର ଭିତରେ ଥିବା ଖାଦ୍ୟର ବାସ୍ନାରେ ମୂଷାମାନେ ତାହା ଉପରକୁ ଡେଇଁପଡ଼ିବେ । କିନ୍ତୁ ସେ ଟିଣର ଉପରଟି ପ୍ରକୃତରେ ଯନ୍ତାର ଦୁଆର ଥିବ ଓ ସେବାଟରେ ମୂଷାମାନେ ଗଳିପଡ଼ି ଆଉ ବାହାରି ପାରିବେନାହିଁ । ଜିମ୍ ତା'ର ସବୁ ବଳକା ସମୟତକ ଏହିପରି ଯନ୍ତା ଗଢ଼ିବାରେ ଲାଗିଗଲେ । ତାଙ୍କର ଜଣେ ସାଙ୍ଗ ମଧ୍ୟ ଏଥିରେ ତାଙ୍କୁ ସାହାଯ୍ୟ କଲା । ବାପାଙ୍କଠାରୁ ସେ ଦଶ ପାଉଣ୍ଡ ଧାର ଆଣି ବେକାର ବସିଥିବା ଜଣେ ଟିଣ କାରିଗର ବିଲ ଜନ୍‌ସନଙ୍କୁ ଅଧିକ ଯନ୍ତା ତିଆରି କରିବାରେ ଲଗାଇଲେ । ଶେଷରେ ସେ ଏକ ହଜାର ତିନିଶହ ଓ ଚଉରାନବେଟି ଯନ୍ତା ତିଆରି କଲେ । କିନ୍ତୁ ସେଥିରୁ ୧୭ଟି ଭାରି ଖରାପ ହୋଇଥିବାରୁ ସେ ଆଣିନଥିଲେ ।

ସେ ବାପାଙ୍କର ଗୋଟିଏ ଗାଡ଼ିରେ ତାଙ୍କର ଯନ୍ତାଗୁଡ଼ିକୁ ଲଦି ଟାୱାରହିଲକୁ ଗଲେ ଏବଂ ଉପାଧ୍ୟକ୍ଷଙ୍କୁ ଭେଟିଲେ । ଉପାଧ୍ୟକ୍ଷ ଜଣେ ଡ୍ୟୁକ୍ ଥିଲେ ଓ ମୂଷା ମାରିବା

କାମର ଦେଖାଶୁଣା କରୁଥିଲେ । ସେ କହିଲେ, "ଏତିକି ଯନ୍ତା ଅବଶ୍ୟ ସବୁ ବନ୍ଦର ପାଇଁ ଯଥେଷ୍ଟ ହେବନାହିଁ । କିନ୍ତୁ ଆମେ ଗୋଟିକରେ ଚେଷ୍ଟା କରିବା ।" ତେଣୁ ୱେଷ୍ଟଇଣ୍ଡିଆ ବନ୍ଦରରେ ସେମାନେ ଯନ୍ତାଗୁଡ଼ିକୁ ରଖିଲେ । ଜାମାଇକା ଓ ତାହା ପାଖର ଦ୍ୱୀପଗୁଡ଼ିକରୁ ଚିନି, ମଦ, ଗୁଡ଼, କଦଳୀ ଆଦି ସେହି ବନ୍ଦରକୁ ଆସୁଥିଲା । ମୁଁ ଭାବୁଛି ଯେ ପରୀକ୍ଷା ପାଇଁ ସେଇଟି ଗୋଟିଏ ଭଲ ଜାଗା ନ ଥିଲା । କାରଣ ସେଠାର ମୂଷାମାନେ ଭାରି ଫୂର୍ତ୍ତି ଓ ଭଲ ଦୌଡ଼ାଳି । ପାଣିଆ ଗୁଡ଼ ଭଳି ଅଠାଳିଆ ଜିନିଷ ରହିଥିବା ବିଭିନ୍ନ ପ୍ରକାରର ପାତ୍ରରେ ଖସିପଡ଼ି ବାହାରିବାରେ ସେମାନେ ଖୁବ୍ ଅଭ୍ୟସ୍ତ । ଯେଉଁମାନେ ଧୀର, ସେମାନେ ସେଥିରେ ଲାଖିଯା'ନ୍ତି ଓ ମରନ୍ତି । ତେଣୁ କେବଳ ଫୂର୍ତ୍ତି ଓ ଭଲ ଚଢ଼ାଳି ମୂଷାମାନେ ହିଁ ସେଠାକୁ ଆସନ୍ତି ।

ଜିମ୍‌ଙ୍କର ଅଧେ ଯନ୍ତାରେ ଛେନା ଓ ବାକି ଅଧକରେ ଘୁଷୁରି ମାଂସ ରଖାଗଲା । ପ୍ରଥମ ରାତିରେ ସେମାନେ ନଅଶହ ଅଠରଟି ମୂଷା ଧରିଥିଲେ । ଜିମ୍ ଖୁବ୍ ଖୁସି ହୋଇଗଲେ ଓ ଭାବିଲେ ମୁଁ ପୁରସ୍କାର ପାଇଯିବି । କିନ୍ତୁ ତା'ପର ରାତିରେ ମାତ୍ର ତିନୋଟି ମୂଷା ଧରା ପଡ଼ିଲେ ଓ ତୃତୀୟ ରାତିରେ ମାତ୍ର ଦୁଇଟି । ପ୍ରଥମ ରାତି ପରେ ମୂଷିକରାଜ ଟିଣଯନ୍ତାକୁ ନ ଛୁଇଁବା ପାଇଁ ତାଙ୍କର ସବୁ ପ୍ରଜାଙ୍କୁ ସାବଧାନ କରାଇ ଦେଇଥିଲେ । ତେଣୁ କେବଳ ଅବାଧ୍ୟ ଓ ବୋକା ମୂଷା କେତୋଟି ଧରା ପଡ଼ିଲେ । ଚତୁର୍ଥ ରାତିରେ ଯନ୍ତାଗୁଡ଼ିକୁ ଭିକ୍‌ଟୋରିଆ ବନ୍ଦରକୁ ନିଆଗଲା । ସେଠାରେ ବି ମାତ୍ର ଚାରିଟି ମୂଷା ଧରା ପଡ଼ିଲେ । କାରଣ ରାଜାଙ୍କ ଚେତାବନୀ ସେଠାରେ ମଧ୍ୟ ପହଞ୍ଚି ଯାଇଥିଲା । ତେଣୁ ଜିମ୍ ମନ ଦୁଃଖରେ ଘରକୁ ଫେରିଲେ । ତାଙ୍କର ବହୁତ ସମୟ ଓ ଦଶ ପାଉଣ୍ଡ ନଷ୍ଟ ହେଲା । ସ୍କୁଲପିଲାମାନେ ଏବେ ତାଙ୍କୁ ଟିଣମୂଷା ବୋଲି ଡାକିଲେ ।

ଚାର୍ଲସ ସ୍ମିଥ ଗୋଟିଏ ଅଲଗା ଯୋଜନା କରିଥିଲେ । ସେ ଗୋଟିଏ ନୂଆ ପ୍ରକାରର ବିଷ ବାହାର କଲେ ଯାହାର ବାସନା କି ଦୁର୍ଗନ୍ଧ କିଛି ନଥିଲା । ତାହା କ'ଣ ଥିଲା ଓ ତାହା କିପରି ତିଆରିହୁଏ ସେକଥା ମୁଁ କହିବି ନାହିଁ । କାରଣ ହତ୍ୟାକାରୀମାନେ ଏହି ଗପ ପଢ଼ି ମଣିଷ ମାରିବାରେ ତାହାକୁ ବ୍ୟବହାର କରିବେ । ସେ ବହୁତ ପରିମାଣରେ ଏହି ବିଷ ଉତ୍ପାଦନ କଲେ । ଆହୁରି ମଧ୍ୟ ଫ୍ରାନ୍‌ସରୁ ଆସୁଥିବା ରକ୍‌ଫୋର୍ଟ ଛେନାର ବାସ୍ନା ଦେଉଥିବା ଏକ ରାସାୟନିକ ସେ ତିଆରିକଲେ । ଏହାର ନାମ ହେଲା ମିଥାଇଲ-ହେପ୍‌ଟାଡେସାଇଲ-କିଟୋନ ଏବଂ ମୁଁ ଭାବେ ଯେ ତାହା ଏକ ସୁନ୍ଦର ବାସ୍ନା । କେତେ ଲୋକଙ୍କୁ ଏହା ଭଲ ଲାଗେ ନାହିଁ, କିନ୍ତୁ ମୂଷାମାନେ ତାକୁ ଖୁବ୍ ପସନ୍ଦ କରନ୍ତି । ସେ ବାପାଙ୍କଠାରୁ କୋଡ଼ିଏ ପାଉଣ୍ଡ ଧାର ଆଣି ଏକଶହ ଶସ୍ତା ଓ ବାଜେ ଛେନା ମୁଣ୍ଡା କିଣିଲେ । ପ୍ରତି ମୁଣ୍ଡାକୁ ସେ ପୁଣି ଏକ ଶହ ଛୋଟ ଛୋଟ ଖଣ୍ଡରେ

କାଟିଲେ । ସେହି ଛୋଟ ଖଣ୍ଡଗୁଡ଼ିକୁ ସେ ପ୍ରଥମେ ବିଷରେ ବୁଡ଼ାଇ ଦେଲେ ଓ ତା'ପରେ ରକ୍‌ଫୋର୍ଟ ଛେନାବାସ୍ନା ଦେଉଥିବା ରାସାୟନିକରେ ବୁଡ଼ାଇ ଦଶ ହଜାର କାଗଜ ପେଟିରେ ରଖିଲେ । ସେ ଭାବିଲେ ଯେ ଏମିତି କଲେ ମୂଷାମାନେ ତାହାକୁ ବିଷାକ୍ତ ଖାଦ୍ୟ ବୋଲି ଭାବିବେ ନାହିଁ । କାରଣ ବିଷମିଶା ଖାଦ୍ୟ ସାଧାରଣତଃ ଏଣେତେଣେ ପକାଯାଇଥାଏ । ପୁଣି ବାକ୍ସଗୁଡ଼ିକ କାଗଜର ହୋଇଥିବାରୁ ମୂଷାମାନେ ସହଜରେ କାଟିକରି ତାହା ଭିତରେ ପଶିପାରିବେ ।

ଦୁଇଜଣ ଲୋକ ଦିନସାରା ଲାଗି ଛେନାବାକ୍ସଗୁଡ଼ିକୁ ଠେଲାଗାଡ଼ିରେ ନେଇ ବନ୍ଦରର ବିଭିନ୍ନ ସ୍ଥାନରେ ରଖିଦେଲେ । ଚାର୍ଲସ ସେମାନଙ୍କ ପଛେ ପଛେ ଯାଇ ପ୍ରତି ଡବା ଉପରେ ଛେନାବାସ୍ନା ଛିଞ୍ଚିଦେଲେ । ସାରା ପୂର୍ବ ଲଣ୍ଡନ ଅପରାହ୍ଣରୁ ଛେନା ଭଳି ବାସିବାରେ ଲାଗିଲା । ସୂର୍ଯ୍ୟାସ୍ତ ପରେ ମୂଷାମାନେ ବାହାରିଲେ ଓ ନିଜ ନିଜ ଭିତରେ କଥାବାର୍ତ୍ତା ହେଲେ, "ଏହା ନିଶ୍ଚୟ ଖୁବ୍ ଚମତ୍କାର ଛେନା ହୋଇଥିବ । ସାଧାରଣ ଛେନାରୁ ବଡ଼ ପେଟିଏ ଯେତେ ବାସେ ନାହିଁ, ଏହି ଛୋଟ ବାକ୍ସର ଛେନା ତା'ଠାରୁ ଖୁବ୍ ଅଧିକ ବାସନା ଦେଉଛି । ତେଣୁ ବହୁତ ମୂଷା ତାକୁ ଖାଇବାରେ ଲାଗିଲେ । ଏମିତିକି ସେମାନେ ମୂଷାରାଜାଙ୍କ ପାଇଁ କିଛି ନେଲେ । କିନ୍ତୁ ତାଙ୍କ ସୌଭାଗ୍ୟକୁ ସେ ଅଳ୍ପ ସମୟ



ଆଗରୁ ୱାଲନଟ ଓ ସିଝା ସାଲ୍‌ମନ୍ ମାଛର ଭୂରି ଭୋଜନ କରିଥିବାରୁ ତାଙ୍କୁ ଜମା ଭୋକ ନଥିଲା । କିଛି ସମୟ ପରେ ବିଷ କାମ ଦେଲା । ଭୋର ତିନିଟାରେ ଯାଇ ମୂଷାମାନେ ମରିବାକୁ ଆରମ୍ଭ କଲେ । ରାଜା ସାଙ୍ଗେ ସାଙ୍ଗେ ସେହି ନୂଆ ଛେନାକୁ ସନ୍ଦେହ କଲେ ଓ ଦୂତମାନଙ୍କୁ ପଠାଇ ସବୁ ପ୍ରଜାଙ୍କୁ ସାବଧାନ କରାଇଦେଲେ ।

ଗୋଟିଏ ଦୁଷ୍ଟ ମୂଷା ତା'ର ପିଲାଗୁଡ଼ିକୁ ଖାଇଯିବାରୁ ମୃତ୍ୟୁଦଣ୍ଡ ପାଇଥିଲା । ରାଜା ତାକୁ ସେଇ ଛେନାରୁ କିଛି ଖାଇବାକୁ କହିଲେ । ସେ ମରିଯିବାରୁ ଛେନା ବିଷାକ୍ତ ବୋଲି ଜଣାଗଲା ଓ ସେ ଆଉ ଦଳେ ଦୂତ ପଠାଇ ଏହି କଥା ପ୍ରଘଟ କରିଦେଲେ । ତା ଆରଦିନ ସକାଳେ ଚାରିହଜାର ପାଞ୍ଚଶହ ଚଉଦଟି ମଲା ମୂଷା ମିଳିଲା ଓ ଆହୁରି କେତେ ତାଙ୍କର ଗାତ ଭିତରେ ମରିକରି ବା ବେମାର ହୋଇ ପଡ଼ିରହିଥିଲେ । ଅଧ୍ୟକ୍ଷ ଏତେ ଖୁସି ହୋଇଗଲେ ଯେ ଅଧିକ ଛେନା କିଣିବାକୁ ସେ ଚାର୍ଲସକୁ କିଛି ଟଙ୍କା ଦେଲେ । ଦୁଇଦିନ ପରେ ଆଠହଜାର ଛେନା ବାକ୍ସ ରଖିଦିଆଗଲା, କିନ୍ତୁ ସେଥିରୁ ମାତ୍ର ଦୁଇଟି ଖୋଲା ଯାଇଥିଲା । ତେଣୁ ସମସ୍ତେ ଜାଣିଲେ ଯେ ବୁଦ୍ଧିରେ ମୂଷାମାନେ ତାଙ୍କୁ ପୁଣିଥରେ ବଳିଗଲେ । ଚାର୍ଲସ ପ୍ରକୃତରେ ଭାରି ଦୁଃଖିତ ହେଲେ । ସେ ସଫଳତା ଲାଭ କରିବାରେ ଏତେ ନିଶ୍ଚିତ ହୋଇଯାଇଥିଲେ ଯେ ଅଧ୍ୟକ୍ଷଙ୍କ ଝିଅଙ୍କୁ ବିବାହ କରିବା ପାଇଁ ଗୋଟିଏ ବାହାଘର ମୁଦି ପାଇଁ ବରାଦ ଦେଇସାରିଥିଲେ ଓ ସେମାନଙ୍କର ବିବାହ କରାଇବା ପାଇଁ କ୍ୟାଣ୍ଟରବରୀର ଆର୍ଚବିଶପଙ୍କୁ ପତ୍ର ଲେଖିଥିଲେ । ଏବେ ସେମାନଙ୍କୁ ଜଣାଇବାକୁ ହେବ ଯେ ସେ ବାହା ହେଉନାହାନ୍ତି । ସବୁଠୁ ବେଶୀ ଖରାପ କଥା ହେଲା ଯେ ତାଙ୍କ ଦେହରେ ସେ ଛେନା ଗନ୍ଧ ମାସେ ଯାଏଁ ରହିଲା । ତେଣୁ ସ୍କୁଲ ଭିତରକୁ ତାଙ୍କୁ ଛଡ଼ାଗଲାନାହିଁ । ଘରେ ମଧ୍ୟ ତାଙ୍କୁ କୋଇଲା ଚାଳିରେ ଶୋଇବାକୁ ହେଲା ।

ଶେଷରେ ଜ୍ୟାକ ତାଙ୍କ ଯୋଜନା ପରୀକ୍ଷା କଲେ । ସେଥିପାଇଁ ବହୁତ ଟଙ୍କା ଦରକାର ଥିଲା । ବାପାଙ୍କଠାରୁ ସେ ତିରିଶି ପାଉଣ୍ଡ ଧାର ନେଲେ, ହେଲେ ତାହା ଯଥେଷ୍ଟ ନ ଥିଲା । ମୋଠାରୁ ମଧ୍ୟ ସେ କିଛି ଧାର ନେଲେ ଓ ସେ ତିଆରି କରିଥିବା କେତୋଟି ବେତାର ଯନ୍ତ୍ର ବିକିଲେ । ଏମିତି ଧୀରେ ଧୀରେ ତାଙ୍କର ଦରକାର ଥିବା ସବୁ ଟଙ୍କା ଯୋଗାଡ଼ କରିଦେଲେ । ସେ କିଛି ଅତି ସରୁ ଲୁହାଗୁଣ୍ଡ କିଣିଲେ ଓ ତାହାକୁ ମିଶାଇ ବିସ୍କୁଟ ତିଆରିକଲେ । ବନ୍ଦର ସାରା ସେ ବିସ୍କୁଟ ସବୁ ପକାଇ ଦିଆଗଲା । ପ୍ରଥମେ ପ୍ରଥମେ ମୂଷାମାନେ ତାହା ଛୁଇଁଲେ ନାହିଁ । ପରେ କିନ୍ତୁ ସେମାନେ ଦେଖିଲେ ଯେ ତାହା କିଛି କ୍ଷତିକରୁନାହିଁ । ସେମାନେ ତେଣୁ ସେଗୁଡ଼ିକୁ ଖାଇବାରେ ଲାଗିଲେ । ଏହି ସମୟରେ ଜ୍ୟାକ ସାତୋଟି ଅତି ବିରାଟ ବିଦ୍ୟୁତଚୁମ୍ବକ ଆଣିଲେ । ସେଗୁଡ଼ିକୁ ବିଭିନ୍ନ ବନ୍ଦରରେ ରଖାଗଲା । ପ୍ରତ୍ୟେକଟି ଗୋଟିଏ ଲେଖାଁ ଗଭୀର ଖାତର ତଳେ ରଖାଗଲା ଓ

ସେ ଖାତର ଧାରକୁ ଖୁବ୍ ଚିକ୍କଣ କରାଗଲା ତା' ମଝିରେ ରଖାଗଲା । ପୂର୍ବଲଣ୍ଡନ ରେଲୱେ ଓ ଜିଲ୍ଲା ରେଲୱେ ଠାରୁ ବିଦ୍ୟୁତ ଶକ୍ତି ଆଣିବା ପାଇଁ ସେ ଚୁମ୍ବକଗୁଡ଼ିକ ପାଖକୁ ତାର ଟଣାଗଲା । ଭାଗ୍ୟକୁ ଜ୍ୟାକ ରେଲୱେର ମୁଖ୍ୟ ବୈଦ୍ୟୁତିକ ଇଞ୍ଜିନିୟରଙ୍କୁ ଜାଣିଥିଲେ । ସେ ଇଞ୍ଜିନିୟର ଭୂତଳ ରେଲୱେର ଦାୟିତ୍ୱରେ ଥିଲେ ଏବଂ ଜ୍ୟାକ୍‌ଭଳି ସେ ମଧ୍ୟ ବେତାରରେ ଆଗ୍ରହୀ ଥିଲେ । ତେଣୁ ବିଜୁଳି ଶକ୍ତି ଧାର ଆଣିବା ଜ୍ୟାକ୍‌ପାଇଁ ସମ୍ଭବ ହୋଇଥିଲା । ଜ୍ୟାକ୍ ଯେତେବେଳେ ଭାବିଲେ ଯେ ମୂଷାମାନେ ବେଶ୍ କିଛି ଲୁହାଗୁଣ୍ଡ ଖାଇସାରିଲେଣି, ସେ ଚୁମ୍ବକ ଦେହରେ ବିଜୁଳି ଚଳାଇବାର ବ୍ୟବସ୍ଥାକଲେ । ଆଖପାଖରେ ସବୁ ଲୁହା, ଇସ୍ପାତ ଓ ନିକେଲ ଜିନିଷକୁ ବାନ୍ଧିରଖିବାକୁ ହେଲା । ସବୁ ଜାହାଜ ଲୁହା-ଇସ୍ପାତରେ ଗଢ଼ା ହୋଇଥିବାରୁ ସେଗୁଡ଼ିକୁ ଅଧିକ ତାରରେ ଭଲକରି ବନ୍ଧାଗଲା । ସବୁ ବନ୍ଦରରେ ଲୋକମାନେ ସେଦିନ ରାତିରେ କଣ୍ଟା ନଥିବା ସ୍ୱତନ୍ତ୍ର ଜୋତା ପିନ୍ଧିଲେ । କେବଳ ଉପାଧ୍ୟକ୍ଷ ତାଙ୍କର ସାଧାରଣ ଜୋତା ପିନ୍ଧିଲେ, କାରଣ ଜଣେ ଡ୍ୟୁକ୍ ହୋଇଥିବାରୁ ସେ ସବୁବେଳେ ସୁନାକଣ୍ଟାଦିଆ ଜୋତା ହିଁ ପିନ୍ଧନ୍ତି ।

ଭୋର ସାଢ଼େ ଗୋଟାଏ ପରେ ଶେଷ ଭୂଇଁତଳ ରେଳଗାଡ଼ି ବନ୍ଦ ହେଲା । ତା'ପରେ ସେମାନେ ସବୁ ବିଦ୍ୟୁତଶକ୍ତି ପ୍ରଥମ ବିଦ୍ୟୁତ-ଚୁମ୍ବକ ଦେହରେ ଚଳାଇଦେଲେ । ସେହି ଚୁମ୍ବକ ଆଡ଼କୁ କିଛି କଳଙ୍କିଲଗା ଲୁହାକଣ୍ଟା ଓ ଟିଣଡବା ମାଡ଼ିଆସିଲା ।



ମୂଷାମାନେ ବି ସେମିତି ଟାଣିହେବାରେ ଲାଗିଲେ । ମାତ୍ର ସେମାନେ ଟିକିଏ ଧୀର ଗତିରେ ଆସିଲେ । ମୂଷାଙ୍କ ପେଟରେ ଲୁହାଗୁଣ୍ଡ ଭର୍ତ୍ତି ହୋଇଥିଲା । ତେଣୁ ଚୁମ୍ବକ ସେମାନଙ୍କୁ ଟାଣିବାକୁ ଲାଗିଲା । ଅଳ୍ପ ସମୟରେ ଚୁମ୍ବକର ଚାରିପଟେ ଥିବା ଗାତଟି ମୂଷାରେ ଭରିଗଲା । ତା'ପରେ ଦ୍ୱିତୀୟ ଚୁମ୍ବକରେ ବିଦ୍ୟୁତଶକ୍ତି ଚଳାଯିବାରୁ ଗାତ ପାଖରେ ଯେତେ ମୂଷା ଥିଲେ ସେସବୁ ଚୁମ୍ବକଶକ୍ତି ଯୋଗୁଁ ଟାଣିହୋଇ ସେଥିରେ ପଡ଼ିଗଲେ । ତା'ପରେ ଆସିଲା ତୃତୀୟ ଚୁମ୍ବକର ପାଳି । ଏହିପରି ସବୁ ଚୁମ୍ବକରେ ବିଦ୍ୟୁତ ଚାଲିଲା ଓ ମୂଷାମାନେ ଟଣାଟଣି ହୋଇ ଖାତରେ ପଡ଼ିଲେ । ଯେତେ ଯୁଆଡୁ ମୂଷା ଆଖପାଖରେ ଥିଲେ ଟଣା ହୋଇ ଆସି ଗାତରେ ପଡ଼ିଲେ । ଅବଶ୍ୟ କେବଳ ଭୂଇଁ ଉପରେ ଥିବା ମୂଷାମାନଙ୍କୁ ଚୁମ୍ବକ ଟାଣି ଆଣିଲା । କିନ୍ତୁ ରାତିସାରା ସେମାନେ ଚୁମ୍ବକଗୁଡ଼ିକୁ ଥରକୁ ଥର ଚଳାଇବାରେ ଲାଗିଲେ ।

ମୂଷାରାଜା ଜାଣିଲେ କେଉଁଠି କିଛି ଅଘଟଣ ହୋଇଛି । ତାଙ୍କୁ ମଧ୍ୟ ଲାଗିଲା ଯେ ସେ ଗାତର ଗୋଟିଏ ପଟକୁ ଟାଣି ହେଉଛନ୍ତି । ବାହାର କଥା ବୁଝିବାପାଇଁ ସେ କିଛି ମୂଷାଙ୍କୁ ପଠାଇଲେ । ମାତ୍ର ସେମାନେ ଆଉ ଫେରିଲେ ନାହିଁ । ଶେଷରେ ସେ ନିଜେ ବାହାରିଲେ । ଚୁମ୍ବକ ସେମିତି ତାଙ୍କୁ ମଧ୍ୟ ଗୋଟିଏ ଗାତ ଆଡ଼କୁ ଟାଣିନେଲା । ସକାଳ ହେବାରୁ ଗାତଗୁଡ଼ିକରେ ପାଣି ଭରିଦେବାରୁ ମୂଷାମାନେ ମରିଗଲେ । ଏହିସବୁ ମୂଷାଙ୍କର ଓଜନ ହେଲା ଦେଢ଼ଶହ ଟନ୍ । କେହି ତାକୁ ଗଣିଲେ ନାହିଁ । ତେବେ ଅନ୍ଦାଜରେ ତାଙ୍କ ସଂଖ୍ୟା ଥିଲା ପ୍ରାୟ ସାତ ଲକ୍ଷ ।

କେତେକ ଅଜବ ଦୁର୍ଘଟଣା ମଧ୍ୟ ଘଟିଗଲା । ଆଲ୍‌ଫ ଟିମ୍ମିନ୍‌ସ ନାମକ ରାତ୍ରି ଜଗୁଆଳି ବିନାଲୁହାକଣ୍ଟାର ଜୋତା ପିନ୍ଧିବାକୁ ଭୁଲିଯାଇଥିଲେ । ତେଣୁ ଚୁମ୍ବକ ତାଙ୍କୁ ଗୋଡ଼ ଆଡ଼ରୁ ଟାଣିନେଲା । ମୂଷାଗାତର ଧାର ଯାଏଁ ଘୋଷାଡ଼ିହୋଇ ଯିବାପରେ ସେ ତାଙ୍କ ଗୋଡ଼ରୁ ଜୋତା ଖସାଇଦେଇ ବଞ୍ଚିଗଲେ । ତଥାପି ତାଙ୍କ ପାଦର ପ୍ରତିଟି ଆଙ୍ଗୁଠିକୁ ଗୋଟିଏ ଲେଖାଁ ମୂଷା କାମୁଡ଼ି ଧରିଲେ । ଚୁମ୍ବକ ଏତେ ଜୋର୍‌ରେ ମୂଷାଗୁଡ଼ିକୁ ଟାଣିଲା ଯେ ତାଙ୍କର ସବୁ ଆଙ୍ଗୁଠି ଛିଡ଼ିଗଲା । ପାଦରେ ଗୋଟିଏ ବି ଆଙ୍ଗୁଠି ନ ଥିବାରୁ ଆଗ ତୁଳନାରେ ଏବେ ତାଙ୍କର ଟିକିଏ ଛୋଟ ଜୋତା ଦରକାର ହେଉଛି । ବର୍ଟ ହିଗ୍‌ସ ନାମକ ଆଉ ଜଣେ ଜଗୁଆଳି ବେଶୀ ଭାଗ୍ୟବାନ ଥିଲେ । ଯୁଦ୍ଧ ପୂର୍ବରୁ ସେ ଜଣେ ଭଲ ବିଲିଆର୍ଡ ଖେଳାଳି ଥିଲେ । କିନ୍ତୁ ଯୁଦ୍ଧବେଳେ ତାଙ୍କ ମସ୍ତିଷ୍କରେ କମାଣ ଗୋଳାର ଖଣ୍ଡେ ଲୁହା ପଶିଗଲା । କୌଣସି ଡାକ୍ତର ଏହି ଲୁହା ଖଣ୍ଡକୁ ବାହାର କରିପାରିଲେ ନାହିଁ । ମସ୍ତିଷ୍କରେ ଏହି ଆଘାତ ଫଳରେ ସେ ଆଉ ବିଲିଆର୍ଡ ଖେଳିପାରିଲେ ନାହିଁ । ଯେତେବେଳେ ଜ୍ୟାକ ଚୁମ୍ବକକୁ ଚଳାଇଦେଲେ ହିଗ୍‌ସ୍‌ଙ୍କ ମସ୍ତିଷ୍କରେ ଲାଖିଥିବା ଲୁହା



ଖଣ୍ଡକ ସାଏଁକରି ବାହାରି ଚୁମ୍ବକ ପାଖକୁ ଚାଲିଗଲା । ଲୁହା ଖଣ୍ଡକ ବାହାରିଗଲାରୁ ମସ୍ତିଷ୍କର ଯେଉଁ ପାଖ ତାଙ୍କୁ ବିଲିଆର୍ଡ ଖେଳରେ ଆଗୁଆ କରିଥିଲା ତାହା ପୁଣି ସକ୍ରିୟ ହୋଇଉଠିଲା । ଫଳରେ ସେ ଆଗ ଭଳି ଖେଳିପାରିଲେ ଓ ପୋପଲାର ଅଞ୍ଚଳର ବିଲିଆର୍ଡ ଚାମ୍ପିଆନ୍ ହୋଇଗଲେ ।

ତା'ପର ରାତିରେ ପୁଣି ଚୁମ୍ବକଗୁଡ଼ିକ ଚଳାଗଲା ଓ ପ୍ରାୟ ଏକଶହ ଟନ୍ ଓଜନର ମୂଷା ଧରିଲେ । ମୂଷାଙ୍କ ରାଜା ମରିଯାଇଥିଲେ, ତେଣୁ କ'ଣ କରାଯାଇପାରିବ ତାହା ସାଧାରଣ ମୂଷାମାନେ ଜାଣିପାରିଲେ ନାହିଁ । ତୃତୀୟ ରାତିରେ ସେମାନେ ଆହୁରି ବେଶୀ ମୂଷା ଧରିଲେ । ଏତେ ମୂଷା ମରିବାର ଦେଖି ବାକି ଯେଉଁ ଅଳ୍ପ ମୂଷା ବଞ୍ଚି ରହିଥିଲେ, ସେମାନେ ବହୁତ ଡରିଯାଇଥିଲେ । ତେଣୁ ସେମାନେ ସେ ଜାଗା ଛାଡ଼ି ପଳାଇଗଲେ । କିଛି ମୂଷା ଜାହାଜରେ ପଶି ବିଦେଶକୁ ଚାଲିଗଲେ । ଆଉ କିଛି ଲଣ୍ଡନକୁ ଗଲେ ଓ ସେଠାରେ ଲୋକମାନଙ୍କ ପାଇଁ ସମସ୍ୟା ସୃଷ୍ଟିକଲେ । ମାତ୍ର ବନ୍ଦରରେ କେହି ବି ରହିଲେ ନାହିଁ । ଚତୁର୍ଥ ରାତିରେ ଗୋଟିଏ ବି ମୂଷା ଚୁମ୍ବକରେ ଧରାପଡ଼ିଲେ ନାହିଁ । ତା'ପରଦିନ କୁକୁର ଓ ବଣ-ବିରାଡ଼ି ସାହାଯ୍ୟରେ ଲୋକମାନେ ମୂଷା ଖୋଜିବାରେ ଲାଗିଲେ, କିନ୍ତୁ ସେଠାରେ ଗୋଟିଏ ହେଲେ ମୂଷା ମିଳିଲେ ନାହିଁ ।

ତେଣୁ ଜ୍ୟାକ୍ ସ୍ମିଥ ଏକ ଲକ୍ଷ ପାଉଣ୍ଡ ପାଇଲେ ଓ ଅଧ୍ୟକ୍ଷଙ୍କ କନ୍ୟାଙ୍କୁ ସମୁଦ୍ର ମଝିରେ ଏକ ଜାହାଜରେ ବିବାହ କଲେ । ସେ ଗୀର୍ଜାରେ ବିବାହ କରିବାକୁ ଚାହିଁଲେ ନାହିଁ । ରେଜିଷ୍ଟ୍ରାର ଅଫିସଗୁଡ଼ିକ ତାଙ୍କୁ ଅତି ଖରାପ ଲାଗେ । ସେ ତେଣୁ ଗୋଟିଏ

ଜାହାଜ ଭଡ଼ା ନେଇ କୂଳରୁ ତିନି ମାଇଲ ଦୂରରେ ବାହାହେଲେ । ସେଠାରେ ଜାହାଜର କ୍ୟାପ୍‌ଟେନ ସେମାନଙ୍କ ବିବାହ କରାଇଲେ । ସେ କିନ୍ତୁ କୂଳରୁ ଅଢ଼େଇ ମାଇଲ ଭିତରେ ଥିଲେ ବାହାଘର କରିପାରି ନଥା'ନ୍ତେ । କାରଣ ତାହା ହିଁ ଆଇନ ଥିଲା । ସେମାନଙ୍କର ଦୁଇଟି ପୁଅ ଓ ଦୁଇଟି ଝିଅ ହେଲେ । ଜ୍ୟାକ୍ ବି·ବି·ସି· ବେତାର ସଂସ୍ଥାରେ ଜଣେ ବଡ଼ ଇଞ୍ଜିନିୟର ଭାବେ ନିଯୁକ୍ତି ପାଇଲେ । ମୂଷାମରା ଟଙ୍କାରେ ସେ ସାରାଜୀବନ କୌଣସି କାମ ନ କରି ଚଳିଯାଇ ପାରିଥା'ନ୍ତେ । ମାତ୍ର ବେତାର ତାଙ୍କର ଏତେ ପ୍ରିୟ ଥିଲା ଯେ ସେ ତା ଉପରେ କାମ ଚଳାଇ ରଖିବାକୁ ଚାହୁଁଥିଲେ ।

ତାଙ୍କ ଭଉଣୀ ଡିଉକ୍‌ଙ୍କୁ ବିବାହ କଲେ, ତେଣୁ ସେ ଜଣେ ଡଚେସ୍ ହୋଇଗଲେ । ଏବେ ଅବଶ୍ୟ ଡଚେସ୍‌ମାନଙ୍କୁ ଆଗଭଳି ଖାତିର ମିଳୁନାହିଁ । ସ୍ୱାମୀଙ୍କ ସୁନାକଣ୍ଟା ଲାଗିଥିବା ଜୋତା ସାଙ୍ଗରେ ମେଳ ଖାଇଲା ଭଳି ତାଙ୍କ ଜୋତାରେ ହୀରାର ଗୋଇଠି ଥିଲା । ନିଜ ନିଜର କାମ ଆରମ୍ଭ କରିବା ପାଇଁ ଜ୍ୟାକ୍ ତାଙ୍କ ଭାଇ ଜିମ୍ ଓ ଚାର୍ଲସଙ୍କୁ ଯଥେଷ୍ଟ ଟଙ୍କା ଦେଇଥିଲେ । ଜିମ୍ ତାଙ୍କ ଟଙ୍କାରେ ଯାଦୁବାଡ଼ି, କୁହୁକ ଟୋପି ଓ ଟେବୁଲ ଆଦି କିଣିଲେ ଏବଂ ଜଣେ ଭଲ ଯାଦୁକର ହୋଇପାରିଲେ । ଅଧିକ ପଢ଼ିବା ପାଇଁ ଚାର୍ଲସ ବିଶ୍ୱବିଦ୍ୟାଳୟକୁ ଗଲେ ଓ ପଢ଼ା ଶେଷରେ ରସାୟନ ବିଜ୍ଞାନର ଅଧ୍ୟାପକ ହୋଇଥିଲେ । ମୁଁ ମଧ୍ୟ ଜଣେ ଅଧ୍ୟାପକ ଓ ତାଙ୍କୁ ଭଲ ଭାବେ ଜାଣିଛି । ଏହି ଭାବରେ ସେମାନେ ସମସ୍ତେ ସୁଖରେ କଟାଇଲେ ।



# ସୁନାଦାନ୍ତ ବାଲା ସାପ

# ସୁନାଦାନ୍ତ ବାଲା ସାପ

ଏକଦା ବ୍ରାଜିଲ ଦେଶର ମାନୋସଠାରେ ଜଣେ ଖୁବ୍ ଧନୀଲୋକ ଥିଲେ । ତାଙ୍କ ନାଁ ଥିଲା ପାଓଲୋ ମାରିଆ ଏନକୋର୍ଣ୍ଣାକୋ ଏସ୍‌ପ୍ଲେଣ୍ଡିତୋ । ତାଙ୍କର ଦୁଇଟା ସୁନା ଖଣି ଓ ଗୋଟିଏ ରୁପା ଖଣି ଥିଲା ।

ରୁପା ଅପେକ୍ଷା ସୁନାର ଦାମ୍ ଖୁବ୍ ଅଧିକ, ତେଣୁ ସମସ୍ତେ ଭାବନ୍ତି ଯେ ରୁପା ଖଣି ଅପେକ୍ଷା ସୁନା ଖଣିରୁ ବେଶୀ ରୋଜଗାର ହେଉଥିବ । କିନ୍ତୁ ପ୍ରକୃତରେ ସୁନା ଖଣିରୁ ଯେତିକି ରୋଜଗାର ହୁଏ ତା'ଠାରୁ ଅଧିକ ଖର୍ଚ୍ଚ ହୋଇଥାଏ । କାରଣ ଲୋକମାନେ ଏପରି ଜାଗାରେ ସୁନା ଖଣି ଖୋଳୁଛନ୍ତି ଯେଉଁଠି ଲାଭଦେବା ପାଇଁ ଯଥେଷ୍ଟ ସୁନା ନ ଥାଏ ।

ଶ୍ରୀ ଏସ୍‌ପ୍ଲେଣ୍ଡିତୋଙ୍କ ସୁନା ଖଣି ଅବଶ୍ୟ ସେପରି ନଥିଲା । ତାଙ୍କ ଖଣିଗୁଡ଼ିକରୁ ସେ ଭଲ ଆୟ ପାଉଥିଲେ । ପୁଣି ରୁପା ଖଣିରୁ ସେ ଆହୁରି ବେଶୀ ରୋଜଗାର କରୁଥିଲେ । କିନ୍ତୁ ସେ ଏତେ ଧନୀ ହେବାର ଗୋଟିଏ କାରଣ ହେଲା ଯେ ସେ ତାଙ୍କ ଖଣିରେ କାମ କରୁଥିବା ଲୋକମାନଙ୍କୁ ବେଶୀ ପଇସା ଦେଉନଥିଲେ । ତେଣୁ ଲୋକମାନେ ତାଙ୍କୁ ଭଲ ପାଉନଥିଲେ ।

ପାଖରେ ବେଶୀ ଟଙ୍କା ଥିଲେ କିଛି ଲୋକ ବିଶ୍ୱବିଦ୍ୟାଳୟ, ଡ଼ାକ୍ତରଖାନା, ପାର୍କ ଓ ଚିତ୍ରଶାଳା ଆଦି ଭଲ କାମ ପାଇଁ ଖର୍ଚ୍ଚ କରିଥା'ନ୍ତି । ଅନ୍ୟମାନେ ହୀରା ବା ଦୌଡ଼ାଳୀ ଘୋଡ଼ା କିଣନ୍ତି, କିନ୍ତୁ ତାହା କାହାରି କାମରେ ଲାଗେନାହିଁ । ଶ୍ରୀ ଏସ୍‌ପ୍ଲେଣ୍ଡିତୋ ଦ୍ୱିତୀୟ ଦଳର ମଣିଷଙ୍କ ଭଳି ଅଦରକାରୀ ଜିନିଷକୁ ବେଶୀ ପସନ୍ଦ କରୁଥିଲେ । କିନ୍ତୁ ସେ ରହୁଥିବା ଜାଗାର ଚାହିଦାକୁ ନେଇ ସେ ଇଂଲଣ୍ଡର ଅନ୍ୟ ଧନୀଲୋକଙ୍କଠାରୁ ଅଲଗା ପ୍ରକାରର ଜିନିଷ କିଣୁଥିଲେ । ତାଙ୍କ ଅଞ୍ଚଳର ରାସ୍ତା ଏତେ ଖରାପ ଥିଲା ଯେ ସେଠାରେ ଗାଡ଼ି ଚଲାଇବା ମଜାର କଥା ନ ଥିଲା । ତେଣୁ ସେ ମାତ୍ର ଗୋଟିଏ କାର୍ ରଖିଥିଲେ ।

କିନ୍ତୁ ତାଙ୍କର ଥିଲା ତିନୋଟି ମଟର ନୌକା । କାରଣ ବ୍ରାଜିଲର ସେଇ

ଅଞ୍ଚଳରେ ଲୋକମାନେ ରାସ୍ତା ବଦଳରେ ନଦୀପଥକୁ ଅଧିକ ବ୍ୟବହାର କରନ୍ତି । ଆମାଜନ ନଦୀ ରିଓ ନେଗ୍ରୋ ସହିତ ମିଶିଥିବା ଜାଗାରେ ମାନୋସ୍ ଅବସ୍ଥିତ, ତେଣୁ ନୌକା ଚଳାଇବା ପାଇଁ ସେଠାରେ ପ୍ରଚୁର ପାଣି ଥିଲା । ଦେଖାଇହେବା ପାଇଁ ଏହି ସବୁ ମଟର ନୌକାର ସବୁ କଳକବଜା ରୁପାରେ ଗଢ଼ାଇଥିଲେ । ସେହି କାରଣରୁ ସେ ତାଙ୍କର ପତ୍ନୀଙ୍କ ପାଇଁ ମଧ୍ୟ ହୀରାର ବଳା ଗଢ଼ାଇଥିଲେ । ଅବଶ୍ୟ ବଳାଗୁଡ଼ିକୁ ଖୁବ୍ ବଡ଼ ଆକାରର କରିବାକୁ ହୋଇଥିଲା, କାରଣ ତାଙ୍କ ସ୍ତ୍ରୀ ଖୁବ୍ ମୋଟି ଥିଲେ । ତାଙ୍କର ଘରଭିତରେ ଅନେକ ପ୍ରକାରର ସୁନା ଜିନିଷ ଥିଲା ଓ ସେସବୁ ତାଙ୍କ ଖଣିର ସୁନାରେ ତିଆରି ହୋଇଥିଲା । ଦାନ୍ତଘଷା ବ୍ରସଗୁଡ଼ିକର ବେଣ୍ଟ ଥିଲା ସୁନାର, ଖାଇବା ପାଇଁ ତାଙ୍କର ଚାମଚ ଓ କଣ୍ଟାଚାମଚ, ସାବୁନଖୋଳ ଓ ଦୁଆର ହେଣ୍ଡଲ ଆଦି ମଧ୍ୟ ଥିଲା ସୁନାତିଆରି । ସପ୍ତାହର ପ୍ରତିଦିନ ସେ ସୁନାର ଅଲଗା ଅଲଗା ହାତ ଘଣ୍ଟା ପିନ୍ଧୁଥିଲେ ।

ଗୋଟିଏ ଘରୋଇ ଚିଡ଼ିଆଖାନା ଭଳି ତାଙ୍କ ଘରେ ସେ ବହୁଗୁଡ଼ିଏ ଜନ୍ତୁ ରଖିଥିଲେ । ମୁଁ ଭାବୁଛି ଯେ ଜୀବଜନ୍ତୁଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଥିଲା ତାଙ୍କର ଏକମାତ୍ର ଭଲଗୁଣ । ଜୀବଜନ୍ତୁଙ୍କୁ ଭଲପାଉଥିବା ମଣିଷର ସବୁ ଗୁଣ କେବେ ଖରାପ ହେବ ନାହିଁ । ବ୍ରାଜିଲରେ ଦେଖାଯାଉଥିବା ମୂଷାଙ୍କଠାରୁ ବଡ଼ ସବୁ ପ୍ରକାରର ଜନ୍ତୁ କିଛି କିଛି ସଂଖ୍ୟାରେ ତାଙ୍କ ଘରେ ରହିଥିଲେ ।

ତାଙ୍କର ସାତଟି ସ୍ଥାନୀୟ କେମାନ୍ କୁମ୍ଭୀର ଥିଲେ । ସେଗୁଡ଼ିକ ଦେଖିବାକୁ ଭାରତୀୟ କୁମ୍ଭୀର ପରି । କିନ୍ତୁ ତାଙ୍କ ଉପର ପାଟିରେ ଦୁଇଟି କଣା ଥାଏ ଓ ତଳପାଟିର ଦୁଇଟି ବଡ଼ ଦାନ୍ତ ସେ କଣାରେ ଖାପଖାଇ ରହେ । ଅଧିକାଂଶ ଭାରତୀୟ କୁମ୍ଭୀରଙ୍କ ଦେହରେ ଏଭଳି କଣା ନ ଥାଏ । ଯୁକ୍ତରାଷ୍ଟ୍ର ଆମେରିକାର କୁମ୍ଭୀରଙ୍କ ଠାରୁ ବି ଏମାନେ ବେଶ୍ ଅଲଗା । ତାଙ୍କ କୁମ୍ଭୀରଙ୍କ ଭିତରୁ କେତୋଟି କୋଡ଼ିଏ ଫୁଟ ଲମ୍ବ ।

ତାଙ୍କର ତିନୋଟି ଜାଗୁଆର ବାଘ ଓ ଦୁଇଟି ଆନାକୋଣ୍ଡା ସାପ ଥିଲେ । ଆନାକୋଣ୍ଡା ହେଉଛି ବ୍ରାଜିଲରେ ଦେଖାଯାଉଥିବା ପ୍ରାୟ ଅଜଗର ଭଳି ଖୁବ୍ ବଡ଼ ସାପ । ସେଗୁଡ଼ିକ ବିଷାକ୍ତ ନୁହଁନ୍ତି, କିନ୍ତୁ ସେମାନେ ମଣିଷ ଦେହରେ ଗୁଡ଼ାଇ ହୋଇ ତାକୁ ଚକଟି ଦେଇପାରନ୍ତି । ସେମାନେ ମଧ୍ୟ ଭଲ ପହଁରି ପାରନ୍ତି ।

ତାଙ୍କର ସାପଙ୍କ ଭିତରେ ଗୋଟିଏ ମାଈ ଆନାକୋଣ୍ଡା ଥିଲା । ଏସ୍ପ୍ଲେଣ୍ଡିଡୋ ସେ ସାପର ଅଣ୍ଡାକୁ ସିଝାଇକରି ସୁନାର ଅଣ୍ଡାପାତ୍ରରେ ରଖି ସୁନା ଚାମଚରେ ଖାଉଥିଲେ । ସେ କହୁଥିଲେ ଯେ ସେ ଅଣ୍ଡାଗୁଡ଼ିକ ଭାରି ସୁଆଦିଆ । କିନ୍ତୁ ସେ ଏତେ ଦେଖାଣିଆ ଯେ ବୋଧହୁଏ ତାହା ଆଦୌ ଭଲ ଲାଗୁନଥିଲା, ଖାଲି ଦେଖାଇହେବାକୁ ସେ ଏପରି କହୁଥିଲେ । ତେବେ ତାହା ଭଲ କି ନୁହେଁ ମୁଁ ଠିକ କରି କହିପାରିବି ନାହିଁ,

କାରଣ ମୁଁ କେବେ ଖାଇନାହିଁ । ସେହି ଅଣ୍ଡା ଖାଇଥିବା ଆଉ ଜଣେମାତ୍ର ଲୋକଙ୍କୁ ମୁଁ ଜାଣିଥିଲି । ସେ ଥିଲେ ଶ୍ରୀ ମ୍ୟାକ୍‌ଅଣ୍ଟିଚ୍ ନାଁର ଜଣେ ଆବିଷ୍କାରକ ଏବଂ ଥରେ ସେ ଗୋଟିଏ ବକତରେ ଏହି ଅଣ୍ଡାରୁ ତିନୋଟି ଖାଇଥିଲେ । ଅବଶ୍ୟ ସେ ତାହା ଆଗରୁ ଏକ ସପ୍ତାହ ଧରି ଭୋକିଲା ରହିଥିଲେ । ତେଣୁ ସେ ଅଣ୍ଡା ଯଦି ତାଙ୍କୁ ଭଲ ଲାଗିଲା ସେଥିରେ ଆଷ୍ଚର୍ଯ୍ୟ ହେବାର କିଛି ନାହିଁ ।

ସବୁ ପ୍ରକାରର କୁମ୍ଭୀରଙ୍କ ଭଳି କେମାନଗୁଡ଼ିକ ବୋକା ଜନ୍ତୁ, ତେଣୁ ସେମାନେ ସାଧାରଣତଃ କିଛି ଶିଖିପାରନ୍ତି ନାହିଁ । ସେମାନଙ୍କ ମୁଣ୍ଡ ଖୁବ୍ ବଡ଼ ମାତ୍ର ମସ୍ତିଷ୍କ ଠେକୁଆ ମସ୍ତିଷ୍କଠାରୁ ବି ଛୋଟ । କୁକୁର, ମାଙ୍କଡ଼ ବା ମଣିଷ ମସ୍ତିଷ୍କ ତୁଳନାରେ ତାହା ଅତି ଛୋଟ । ସେହି ଛୋଟ ମସ୍ତିଷ୍କରେ ଅଳ୍ପ କିଛି କାମ କରିବାର ଦକ୍ଷତା ରହିଥାଏ । କୁକୁରର ମସ୍ତିଷ୍କ ବେଶ୍ ବଡ଼, ତେଣୁ ସେ କେତେ ହଜାର ପ୍ରକାରର କାମ କରିପାରେ । ମଣିଷର ମୁଣ୍ଡ ଆହୁରି ବଡ଼ ହୋଇଥିବାରୁ ସେ ଲକ୍ଷ ଲକ୍ଷ କାମ କରିପାରେ ।

କିନ୍ତୁ ଏହି କୁମ୍ଭୀରଗୁଡ଼ିକ ଭିତରୁ ଗୋଟିକର ବୋଧହୁଏ ଅନ୍ୟ ସାଧାରଣ କୁମ୍ଭୀର ଅପେକ୍ଷା ଟିକିଏ ବଡ଼ ମସ୍ତିଷ୍କ ଥିଲା, କାରଣ ସେ ଗୋଟିଏ ଦୁଇଟି କୌଶଳ ଶିଖିଥିଲା । ସେହି ଜନ୍ତୁମାନଙ୍କର ଯତ୍ନ ନେଉଥିବା ପେଡ୍ରୋ ରୋଡ୍ରିଗେଜ୍ ସେ କୁମ୍ଭୀରକୁ ତାହା ଶିଖାଇଥିଲେ । ସେ ମଧ୍ୟ ଜନ୍ତୁମାନଙ୍କୁ ଖୁବ୍ ଭଲ ପାଉଥିଲେ ଓ ତାଙ୍କର ବହୁତ ଧୈର୍ଯ୍ୟ ମଧ୍ୟ ଥିଲା । ସେ ଡ଼ାକିଲେ ପାଣି ବାହାରକୁ ଆସିବା ପାଇଁ ସେହି କୁମ୍ଭୀରକୁ ଶିଖାଇଥିଲେ । କୁମ୍ଭୀରଟିର ନାଁ ଥିଲା ରୋଜା ।



ମୁଁ କହିବାକୁ ଭୁଲିଯାଇ ଥିଲି ଯେ ରୋଜା ଗୋଟିଏ ମାଈ କୁମ୍ଭୀର । କେତେ ଦୃଷ୍ଟିରୁ କୁମ୍ଭୀରଗୁଡ଼ିକ ବଡ଼ଚିଙ୍ଗୁଡ଼ି ଭଳି । ସେମାନେ ପାଣିରେ ରହନ୍ତି, ତାଙ୍କର ଦେହର ଉପର ଟାଣ, ଆଉ ସେମାନେ କାମୁଡ଼ିକରି ତୁମକୁ ଖଣ୍ଡିଆ କରିପାରନ୍ତି । କିନ୍ତୁ କୁମ୍ଭୀର ଗୁଡ଼ାକ ବଡ଼ଚିଙ୍ଗୁଡ଼ି ପରି ଖାଇବାକୁ ଭଲନୁହେଁ । ତେବେ ଏସବୁରେ ବେଶୀ କିଛି ଯାଏ ଆସେ ନାହିଁ । କାରଣ ଆଗକୁ ତା'କଥା କହିଲାବେଳେ ମୁଁ ଖାଲି ରୋଜା ହିଁ କହିବି ।

ରୋଜା ଆଉ କିଛି କୌଶଳ ମଧ୍ୟ ଶିଖିଗଲା । ସେ ତା'ର ପଛ ଦୁଇଗୋଡ଼ ଓ ଲାଞ୍ଜରେ ବସିପାରୁଥିଲା ଏବଂ ତା'ର ପାଟି ମେଲାଇ ଲୋକମାନଙ୍କ ଠାରୁ ଖାଦ୍ୟ ଚାହୁଁଥିଲା । ସେ ତା'ର ପାଟିରେ ଲାଞ୍ଜକୁ ଧରିପାରୁଥିଲା ଓ ନିଜ ଚାରିପଟେ ଘୂରିପାରୁଥିଲା । ରୋଜାର ସ୍ୱାମୀ ଥିଲା ଜୋଆଓ, ଯାହା ଜନ ନାଁର ପର୍ତ୍ତୁଗୀଜ ରୂପ । ସେ ଥିଲା ବେଶ୍ ବୋକା ଓ ଚିଡ଼ା ଜୀବ । ଅନ୍ତତଃ ସେ ପୁରୁଷ ଲୋକଙ୍କ ଉପରେ ଭାରି ଚିଡୁଥିଲା । ସେ ରୋଜା ଉପରେ ହୁଏତ ଚିଡୁଥା'ନ୍ତା, କିନ୍ତୁ ରୋଜା ତାଙ୍କୁ ସାବାଡ଼ କରି ରଖିଥିଲା । ଜୋଆଓ ଯଦି ବେଶୀ ଲୋଭୀ ହେଉଥିଲା ଓ ରୋଜାକୁ ଉଚିତ ଭାଗ ଦେଉନଥିଲା, ତେବେ ରୋଜା ତାକୁ ଲାଞ୍ଜରେ ଜୋରରେ ପିଟୁଥିଲା ।

ଦିନେ ଶ୍ରୀ ଏସ୍‌ପ୍ଲେଣ୍ଡିଡୋ ପଶୁମାନେ କିପରି ଅଛନ୍ତି ସେ ବିଷୟରେ ପେଡ୍ରୋଙ୍କୁ ପଚାରିଲେ । ସେ ଉତ୍ତର ଦେଲେ, "ସେମାନେ ସମସ୍ତେ ଖୁବ୍ ଭଲ ଅଛନ୍ତି । କେବଳ ପୁରୁଷ ଆନାକୋଣ୍ଡାର ଦୁଇଟି ଦାନ୍ତ ଭାଙ୍ଗିଯାଇଛି, କିନ୍ତୁ ତାହା ପୁଣି ଉଠିଯିବ ।"

ଶ୍ରୀ ଏସ୍‌ପ୍ଲେଣ୍ଡିଡୋ କହିଲେ, "ବୋକା, ସେ ବଡ଼ ହୋଇଗଲାଣି, ତେଣୁ ତା'ର ଦାନ୍ତ ଆଉ ଉଠିପାରିବ ନାହିଁ ।"



ପେଡ୍ରୋ ଖାଲି କହିଲେ, "ଆଚ୍ଛା, ଭଲ କଥା ।" କାରଣ ସେ ଜାଣିଥିଲେ ଯେ ମାଲିକଙ୍କ ସାଙ୍ଗରେ ଯୁକ୍ତିକରି କିଛି ଲାଭ ନାହିଁ । ତାଙ୍କ ମାଲିକ ଭାରି ବୃଥାଭିମାନୀ ମଣିଷ ଓ ତାଙ୍କର କିଛି ଭୁଲ ଦେଖାଇଲେ ସେ ଖୁବ୍ ରାଗିଯାଆନ୍ତି ।

ତା'ପରେ ଶ୍ରୀ ଏସ୍‌ପ୍ଲେଣ୍ଡିଡୋଙ୍କ ମୁଣ୍ଡରେ ଗୋଟିଏ ବଡ଼ ବୁଦ୍ଧି ଜୁଟିଲା । ସେ ଠିକକଲେ ଯେ ସାପର ଭଙ୍ଗା ଦାନ୍ତ ଜାଗାରେ ସୁନାର ଦାନ୍ତ ଲଗାଇଦେବେ । ତା' ହେଲେ ସେ ହେବେ ପୃଥିବୀରେ ଏକମାତ୍ର ଲୋକ, ଯାହାଙ୍କର ସୁନାଦାନ୍ତ ଥିବା ସାପଟିଏ ଅଛି । କାରଣ ଲୋକଙ୍କ ପାଖରେ ସୁନାତିଆରି ଚାମୁଚ, ଘଡ଼ି, ଲୁଣ ଜାଗା ଓ ସେହିଭଳି ଆଉ କେତେ କ'ଣ ଅଛି । ଭାରତରେ କେତେ ରାଜା ରାଜୁଡ଼ାଙ୍କ ପାଖରେ ସୁନା ତିଆରି କେତେ ବିଚିତ୍ର ଜିନିଷ ଥାଏ । ସ୍ୱାତ୍‌ର ଆଖୁନ୍ଦଙ୍କର ସାତୋଟି ସ୍ତ୍ରୀ ଥିଲେ ଓ ସେମାନେ ସୁନାର ନାକଫୁଲ ଲଗାଉଥିଲେ । ଲା ବେଲାର ଜାମ୍‌ଙ୍କର ସତରଟି ସୁନା ଦାନ୍ତଖୁଣ୍ଟା, ପାଞ୍ଚୋଟି ସୁନାର ଶୁଆ ପଞ୍ଜୁରୀ ଓ ଗୋଟିଏ ସୁନାର ପାଦରମ୍ଭା ଥିଲା । ଭୋପାଳର ବେଗମ୍‌ଙ୍କର ସୁନାର ଗୋଟିଏ ସିଲେଇ ମେସିନ ଥିଲା । ସେ ଜଣେ ବୟସ୍କା ଓ ବୁଦ୍ଧିମତୀ ଭଦ୍ର ମହିଳା ଥିଲେ, କିନ୍ତୁ ସେ ସବୁବେଳେ ଗୋଟିଏ ମୁଣିରେ ନିଜର ମୁଣ୍ଡକୁ ପୂରାଇ କରି ବାହାରକୁ ଯାଉଥିଲେ । କାରଣ ସେ ଭାବୁଥିଲେ ଲୋକମାନେ ତାଙ୍କ ମୁହଁ ଚାହିଁବା ଅନୁଚିତ । ଷିତିର ନୋନୋଙ୍କର ଗୋଟିଏ ସୁନା ପିକଦାନୀ ଥିଲା । (ତୁମେ ଭାବୁଥିବ ଷିତିର ନୋନୋ ହେଉଛି ମୋର ମନଗଢ଼ା ନାଁଟିଏ । କିନ୍ତୁ ତାହା ଠିକ ନୁହେଁ । ହିମାଳୟ ପର୍ବତରେ ଷିତି ନାମରେ ଏକ ସ୍ଥାନ ରହିଛି । ଏହା ବତ୍ରିଶ ଡିଗ୍ରୀ ଉତ୍ତର ଅକ୍ଷାଂଶ ଓ ବାସ୍ତରୀ ଡିଗ୍ରୀ ପୂର୍ବ ଦ୍ରାଘିମାରେ ଅବସ୍ଥିତ । ସେଠାରେ ରାଜାଙ୍କୁ ନୋନୋ କୁହାଯାଏ । କୌଣସି ମଣିଷ ଓ ଜାଗାର ମଉଜିଆ ନାଁ ବିଷୟରେ ମୁଁ କିଛି କରିପାରିବିନାହିଁ ।)

ତେଣୁ ଶ୍ରୀ ଏସ୍‌ପ୍ଲେଣ୍ଡିଡୋ କହିଲେ, "ମୁଁ ଜେସିଣ୍ଟୋ (ଆନାକୋଣ୍ଡାର ନାମ) ପାଇଁ କେତୋଟି ସୁନା ଦାନ୍ତ ଗଢ଼ିବା ପାଇଁ ଦନ୍ତ ଚିକିତ୍ସକଙ୍କ ପାଖକୁ ଯିବି । ମାନୋସ୍‌ଠାରେ ଜଣେ ଭଲ ଦାନ୍ତ ଡାକ୍ତର ଥିଲେ, ହେଲେ ମୁଁ ତାଙ୍କ ନାମ ଭୁଲିଯାଇଛି । ତେବେ ତାଙ୍କ ନାମ ଯାହା ହେଲେ ବି ଏହି ଗପରେ କିଛି ତଫାତ ଆସିବ ନାହିଁ । ଆଗରୁ ସେ ଶ୍ରୀ ଏସ୍‌ପ୍ଲେଣ୍ଡିଡୋଙ୍କ ପାଟିରେ ଅନେକ ଦାନ୍ତରେ ସୁନା ଭରଣା କରିଥିଲେ ଓ କେତୋଟି ସୁନାଦାନ୍ତ ମଧ୍ୟ ଖଞ୍ଜିଥିଲେ । ତେଣୁ ଶ୍ରୀ ଏସ୍‌ପ୍ଲେଣ୍ଡିଡୋ ତାଙ୍କ ପାଟି ଖୋଲିଲେ ତାହା ବ୍ୟାଙ୍କ ଅଫ ଇଂଲଣ୍ଡର ସୁନା ଭଣ୍ଡାର ଭଳି ଦିଶେ । କେହି ଦାବିକଲେ ନୋଟ ବଦଳରେ ଦେବାପାଇଁ ବ୍ୟାଙ୍କ ଯେଉଁ ସୁନା ରଖିଥାଏ, ତାହା ସେ ଭଣ୍ଡାର ଘରେ ରହିଥାଏ ।

ପାଟିରେ ଏତେ ସୁନା ଥିବା ଆଉ ଜଣେ ମାତ୍ର ଲୋକଙ୍କୁ ମୁଁ ଜାଣିଥିଲି ଏବଂ ସେ କାନାଡାର ୟୁକନ ନଦୀରେ ନୌଚାଳକ ଥିଲେ । ସେହି ନଦୀଟି ପ୍ରଚୁର ସୁନା ରହିଥିବା

ଜାଗା କ୍ଲୋନଡାଇକ ପାଖରେ ବହିଥାଏ । ତେଣୁ ସେଠାରେ ସୁନା ଭାରି ଶସ୍ତା । ଗୋଟିଏ ରୁଟି ବା ଖଣ୍ଡେ ବହି ଭଳି ସାଧାରଣ ଜିନିଷ ବଦଳରେ ମଧ୍ୟ ପ୍ରଚୁର ସୁନା ମିଳିପାରେ । ଏଥିରୁ ଜଣାପଡ଼େ ଯେ ସୁନା ଛଡା ଆଉ ସବୁ ଜିନିଷ ସେଠାରେ ବେଶ୍ ମହରଗ । ୟୁକାନର ସେହି ନୌଚାଳକଙ୍କୁ ମୁଁ ମେସୋପଟାମିଆରେ ପ୍ରଥମେ ଭେଟିଥିଲି । ଯୁଦ୍ଧ ସମୟରେ ସେଠାରେ ସେ ଗୋଟିଏ ଜାହାଜ ଚଳାଇ ତୁର୍କୀମାନଙ୍କ ବିରୁଦ୍ଧରେ ଲଢୁଥିବା ସୈନ୍ୟମାନଙ୍କୁ ଟାଇଗ୍ରିସ୍ ନଦୀରେ ନେବା ଆଣିବା କରୁଥିଲେ । ମୁଁ ସେହି ସୈନ୍ୟଙ୍କ ଭିତରୁ ଜଣେ ଥିଲି । ସେ ବହୁତ ହୁଇସ୍କି ପିଉଥିଲେ ଓ ପ୍ରବଳ ଗାଳି ଦେଉଥିଲେ ।

ସେ ଯାହାହେଉ, ଦାନ୍ତ ଡାକ୍ତର ଜଣକ ଆନାକୋଣ୍ଡା ସାପ ପାଇଁ ଦାନ୍ତ ଗଢ଼ିବାକୁ ବିଶେଷ ଆଗ୍ରହୀ ନ ଥିଲେ । କାରଣ ସେ କହିଲେ, "ମୁଁ ଦାନ୍ତ କାମ କଲାବେଳେ ଜଣେ ମଣିଷକୁ ଯେତେ କଷ୍ଟ ହେଲେ ବି ସେ ମୋତେ ଖାଇଦେବ ନାହିଁ । ମାତ୍ର ବଡ଼ ସାପଟିଏ ତାହା କରିପାରିବ । ନ ଖାଇଲେ ବି ଦେହରେ ଗୁଡ଼ାଇହୋଇ ମୋତେ ଚିପିପକାଇବ ।"

ଶ୍ରୀ ଏସ୍ପ୍ଲେଣ୍ଡିଡୋ କହିଲେ, "ଆସନ୍ତୁ, ସାପକୁ ଦେଖନ୍ତୁ ଓ ଦାନ୍ତର ମାପ ଠିକ କରନ୍ତୁ । ଦାନ୍ତ ଲାଗିଲାବେଳେ ସେ ଯେପରି କାମୁଡ଼ିବ ନାହିଁ ସେକଥା ଆମେ ବୁଝିବୁ ।"

ସେମାନେ କିଛି ସମୟ ଯୁକ୍ତିତର୍କ କଲେ ଓ ତା'ପରେ ଦନ୍ତ ଚିକିତ୍ସକ କହିଲେ, "ମଣିଷ ଦାନ୍ତ ଲଗାଇବା ପାରିଶ୍ରମିକର ତିନିଗୁଣ ଦେଲେ ମୁଁ ଏ କାମଟି କରିବି ।" ଶେଷରେ ସେ ଚକଚକିଆ ମଟର ନାଆରୁ ଗୋଟିକରେ ବସି ଆସିଲେ ଓ ସାପର ଦାନ୍ତ ଦେଖିଲେ । ଦେଖିଲାପରେ ସେ ଘରକୁ ଯାଇ କିଛି ସୁନାଦାନ୍ତ ତିଆରିକଲେ । ସୁନାଦାନ୍ତ ଲଗାଇଲାବେଳେ ସାପକୁ କିପରି ଧୀରସ୍ଥିର କରି ରଖିବାକୁ ହେବ ସେ ବିଷୟରେ ପେଡ୍ରୋ ରୋଡ୍ରିଗେଜ୍ ଗୋଟିଏ କୌଶଳ ଏହା ଭିତରେ ଠିକ କଲେ ।

ଜେସିଣ୍ଟୋ ଅଠର ଫୁଟ ଲମ୍ବା । ସେ ତେଣୁ ସେଇ ଲମ୍ବର ଗୋଟିଏ ଲୁହା ପାଇପ ଯୋଗାଡ଼ କଲେ ଓ ତାହାର ଗୋଟିଏ ମୁଣ୍ଡରେ ଖଣ୍ଡେ କନା ବାନ୍ଧିଦେଲେ । ସେ କନାରେ ଗୋଟିଏ ଗୋଲ କଣା ଥିଲା ଯାହାକୁ ଗୋଟିଏ ଫିତା ଟାଣିକରି ଗୋଟିଏ ବଟୁଆର ମୁହଁଭଳି ବନ୍ଦ କରାଯାଇପାରିବ । ପାଇପର ଅନ୍ୟପଟଟି ଖୋଲା ରହିଲା ।

ଜେସିଣ୍ଟୋ ଓ ତା' ସ୍ତ୍ରୀ ଗୋଟିଏ ଖୁଆଡ଼ରେ ରହିଥିଲେ । ଚିଡ଼ିଆଖାନାରେ ସାପ ରହିଲା ପରି ସେମାନଙ୍କୁ ଘର ଭିତରେ ରଖିବାକୁ ହେଉନଥିଲା । କାରଣ ଲଣ୍ଡନ ତୁଳନାରେ ବ୍ରାଜିଲରେ ଭାରି ଗରମ । ଇଂଲଣ୍ଡରେ ସାପଙ୍କୁ ଉଷୁମ ଜାଗାରେ ରଖିବାକୁ ହୁଏ । କାରଣ ସେମାନେ ମଣିଷ, କୁକୁର, ଘୋଡ଼ା ଓ ପକ୍ଷୀମାନଙ୍କ ପରି ନିଜେ ନିଜର ଦେହକୁ ଉଷୁମ ରଖିପାରନ୍ତି ନାହିଁ ।

ପେଡ୍ରୋ ସାପ ରହୁଥିବା ଖୁଆଡ଼ର କାନ୍ଥରେ ଗୋଟିଏ କଣା କରିଦେଲେ ଓ

ପାଇପର ଖୋଲାପଟକୁ ତା'ଭିତରେ ପୂରାଇ ଦେଲେ । ତା'ପରେ ଗୋଟିଏ ଗିନିପିଗ୍ (ମୂଷାଭଳି ଜନ୍ତୁ ଯାହା ବ୍ରାଜିଲରେ ବହୁତ ମିଳନ୍ତି) ଆଣିଲେ । ସେ ଶ୍ରୀମତୀ ଜେସିଣ୍ଟୋଙ୍କୁ ଅଟକାଇ ରଖିଲେ ଓ ଗିନିପିଗ୍‌ଟିକୁ ଖୁଆଡ଼ ଭିତରେ ଛାଡ଼ିଦେଲେ । ସେ ଭାରି ଡରିଗଲା ଓ ପାଇପ ଭିତରକୁ ପଶିଗଲା । ଜେସିଣ୍ଟୋ ବି ତା' ପଛେ ପଛେ ପାଇପ ଭିତରେ ପଶିଲା । ଗିନିପିଗ୍‌ଟି ପାଇପର ଶେଷ ଯାଏଁ ଦୌଡ଼ିଗଲା ଏବଂ ଆରପଟେ ବାହାରିଯାଇ ଖୁସିରେ ଜୀବନ ବିତାଇଲା ।

ଜେସିଣ୍ଟୋ ତାକୁ ଗୋଡ଼େଇ ଗୋଡ଼େଇ ପାଇପର ଆରପଟେ ମୁଣ୍ଡ ବାହାର କଲାମାତ୍ରେ ପେଡ୍ରୋ ଫିତା ଭିଡ଼ିଦେଲେ ଓ ତାହା ସାପର ବେକକୁ ଚିପି ଧରିଲା । ଫଳରେ ସାପର ଦେହଟି ପାଇପ ଭିତରେ ରହିଲା ଓ କେବଳ ମୁଣ୍ଡଟି ବାହାରକୁ ଦେଖାଯାଉଥିଲା । ସେମାନେ ସାପ ସହିତ ପାଇପଟିକୁ ଉଠାଇନେଲେ ଓ କାଛରେ କଣାଟିକୁ ବନ୍ଦ କରିଦେଲେ ଯେମିତିକି ତା' ସ୍ତ୍ରୀ ବାହାରକୁ ଚାଲିଯିବ ନାହିଁ ।

ସେଇ ପାଇପଟିକୁ ବୁହାଇବା ପାଇଁ ଚାରିଜଣ ଲୋକ ଲାଗିଲେ । ତୁମେ ଚିତ୍ରରେ ସେମାନଙ୍କୁ ଦେଖିପାରିବ । ଜେସିଣ୍ଟୋ ତା' ଜିଭ ଲହ ଲହ କରୁଛି, କାରଣ ସେ ଭାରି ରାଗିଯାଇଛି ଓ ସୁଉ ସୁଉ ଚିତ୍କାର କରୁଛି । ସୁଉ ସୁଉ ଶବ୍ଦକୁ କିପରି ଚିତ୍ରରେ ଫୁଟାଯାଇ ପାରିବ ଚିତ୍ର ଆଙ୍କିଥିବା ଲୋକଟି ତାହା ଜାଣି ନଥିଲା । ତେଣୁ ତୁମେ ସେ ଶବ୍ଦକୁ ଦେଖିପାରୁନାହଁ । ସବା ଆଗରେ ଠିଆ ହୋଇଥିବା ଲୋକଟି ହେଉଛି ପେଡ୍ରୋ ଏବଂ ଶ୍ରୀ ଏସ୍‌ପ୍ଲେଣ୍ଡିଡୋ ଓ ତାଙ୍କ ପତ୍ନୀ କଡ଼ରୁ ଚାହୁଁଛନ୍ତି ।

ସେମାନେ ଜେସିଣ୍ଟୋକୁ ପାଇପରେ ରଖି ମୋଟର ବୋଟ୍‌କୁ ଆଣିଲେ ଏବଂ ଦନ୍ତ ଚିକିତ୍ସକଙ୍କ ପାଖକୁ ନେଲେ । ଦନ୍ତ ଚିକିତ୍ସକ ପ୍ରଥମେ ଡରିଗଲେ । ମାତ୍ର ଏକ ଗ୍ଲାସ ରମ୍ ମଦ୍ୟ ପାନକରି କାମରେ ଲାଗିଗଲେ । ପ୍ରଥମେ ସେମାନେ ପାଇପ୍‌କୁ ଟେବୁଲ ଉପରେ ରଖିଲେ ଯେପରି ଜେସିଣ୍ଟୋର ମୁଣ୍ଡଟି ଧାରରେ ଝୁଲି ରହିଲା । ସେମାନେ ତା'ପରେ ଗୋଟିଏ ଗିନିପିଗ୍ ଆଣି ତା' ପାଟି ଆଗରେ ରଖିଲେ । ଯେତେବେଳେ ସେ ତାକୁ ଧରିବାକୁ ପାଟି ମେଲାଇଲା, ପେଡ୍ରୋ କଡ଼ରୁ ଖଣ୍ଡେ ବାଡ଼ି ତା ପାଟିରେ ପୂରାଇଦେଲେ ଓ ଦୁଇ ମାଢ଼ି ମଝିରେ ରଖିଦେଲେ । ସେ ଓ ଆଉଜଣେ ଲୋକ ମିଶିକରି ସେ ବାଡ଼ିକୁ କଷିକରି ଧରିଲେ । ତା'ପରେ ଦନ୍ତ ଚିକିତ୍ସକ ତାଙ୍କ କାମରେ ଲାଗିଗଲେ ।

ବିଚରା ଜେସିଣ୍ଟୋ ତା'ର ପାଟି ବନ୍ଦ କରିପାରିଲା ନାହିଁ । ତା'ପରେ ଦନ୍ତ ଚିକିତ୍ସକ ଗୋଟିଏ ଘୋରାଯନ୍ତ୍ର ସାହାଯ୍ୟରେ ତାଙ୍କ କାମ ଆରମ୍ଭକଲେ । ତୁମେ ଜେସିଣ୍ଟୋର ସୁଉ ସୁଉ ଶୁଣିଥା'ନ୍ତ କି ! ବେଶୀ ସମୟ ଷ୍ଟେସନରେ ଅଟକିଥିବା ଷ୍ଟିମ ଇଞ୍ଜିନର ବଏଲର ଫାଟି ନ ଯିବା ପାଇଁ ଡ୍ରାଇଭର ବାଷ୍ପ ଖଲାସ କରିଦେଲେ ଯେମିତି



ଜୋର ଶବ୍ଦ ହୁଏ ଜେସିଣ୍ଟୋର ଗର୍ଜନ ସେପରି ଥିଲା ।

ଦନ୍ତ ଚିକିତ୍ସକ ଏତେ ଡରିଗଲେ ଯେ ସେ ଆଉ କିଛି ମଦ ପିଇଲେ । ଶେଷରେ ଦୁଇଟି ସୁନାଦାନ୍ତ ଜେସିଣ୍ଟୋର ପାଟିରେ ଶକ୍ତ ଭାବରେ ଲାଗିଗଲା ଓ ଜେସିଣ୍ଟୋକୁ ତା'ର ଖୁଆଡ଼ରେ ଛାଡ଼ି ଦିଆଗଲା । ଶ୍ରୀ ଏସ୍‌ପ୍ଲେଣ୍ଡିଡୋ ଖୁବ୍ ଗର୍ବିତ ହେଲେ ଏବଂ ତାଙ୍କ

ସ୍ତ୍ରୀ ଓ ସବୁ ସାଥୀଙ୍କୁ ସାଙ୍ଗରେ ଧରି ସୁନାଦାନ୍ତ ଥିବା ସାପଟିକୁ ଦେଖିବାକୁ ଗଲେ ।

କିନ୍ତୁ ଜେସିଣ୍ଟୋ ବା ତାଙ୍କ ପତ୍ନୀ ଏଥିରେ ଖୁସୀ ନ ଥିଲେ । କାରଣ ସେମାନେ ଭାବୁ ନ ଥିଲେ ଯେ ଅନ୍ୟ କୌଣସି ଜିନିଷଠାରୁ ସୁନା ଅଧିକ ମୂଲ୍ୟବାନ । ଯେଉଁ ଅଳ୍ପ କିଛି କଥାରେ ସାପମାନେ ମଣିଷଠାରୁ ଅଧିକ ବିଚାରବନ୍ତ, ଏହି କଥାଟି ସେଥିରୁ ଗୋଟିଏ । ମୁଁ ଭାବେ ଯେ ସୁନା ଖଣି ଖୋଳିବାରେ ମଣିଷ ବହୁତ ସମୟ ଓ ଶ୍ରମ ନଷ୍ଟକରେ । କିନ୍ତୁ ସେଥିରୁ ମିଳୁଥିବା ସୁନା ଲୁହା ବା ଚକୋଲେଟ ବା ରବର ଭଳି କାମରେ ଲାଗେନାହିଁ କିମ୍ବା କାଚ, ଫୁଲ ବା ଚିତ୍ର ଭଳି ତାହା ସୁନ୍ଦର ଦେଖାଯାଏ ନାହିଁ ।

ତୁମକୁ ଜଣା ନ ଥିଲେ ବି ପେଡ୍ରୋ ଠିକ ଜାଣିଥିଲେ ଏହାପରେ କ'ଣ ନିଶ୍ଚୟ ଘଟିବ । ଦିନେ ଶ୍ରୀ ଏସ୍‌ପ୍ଲେଣ୍ଡିଡୋ ଜେସିଣ୍ଟୋଙ୍କୁ ଦେଖିବାକୁ ଆସିଲେ । ସେ ଦେଖିଲେ ଯେ ତା'ର ଗୋଟିଏ ସୁନାଦାନ୍ତ ନାହିଁ, ଆଉ ସେଠାରେ ସାଧାରଣ ଦାନ୍ତଟିଏ ରହିଛି ।

ସେ ରାଗରେ ପାଚିଗଲେ ଓ ତାଙ୍କର ବଡ଼ ବାଡ଼ିଟି ଉଠାଇ ପେଡ୍ରୋ ଆଡ଼କୁ ଧାଇଁଗଲେ । ପାଟିକରି ସେ କହିଲେ, "ବଦମାସ ଚୋର, ତୁ ସୁନାଦାନ୍ତକୁ ନେଇଯାଇଛୁ ଓ ଗୋଟିଏ ସାଧାରଣ ନକଲି ଦାନ୍ତ ଲଗାଇଦେଇଛୁ । ତୋତେ ମୁଁ ଚାକିରିରୁ ବାହାର କରିଦେବି ଓ ଜେଲ୍‌ରେ ଭର୍ତ୍ତି କରିଦେବି ।"

ଅସଲ କଥାଟି ହେଉଛି ଯେ ସାପର ଦାନ୍ତ ମଣିଷର ଦାନ୍ତ ପରି ନୁହେଁ । ମଣିଷର କିଛି ଦାନ୍ତ ଦୁଇଥର ଉଠିପାରେ, କିନ୍ତୁ ଆଉ କିଛି ଥରେ ମାତ୍ର ଉଠେ । ଛ' ସାତ ବର୍ଷ ବୟସରେ ମଣିଷର ପ୍ରଥମ ଦାନ୍ତତକ ଖସିପଡ଼େ । କିନ୍ତୁ ବଡ଼ ହେବା ପରେ ଯଦି ଦାନ୍ତ ବାହାରିଯାଏ, ତେବେ ସେଠାରେ ନକଲି ଦାନ୍ତ ଲଗାଇବାକୁ ହୁଏ । ତେଣୁ ଦାନ୍ତକୁ ପୋକ କଣାକଲେ ଅଳ୍ପ ବେଳରୁ ସେ କଣାକୁ ବନ୍ଦ କରିଦେବା ଭଲ । ନ ହେଲେ ପରେ ସେ ଦାନ୍ତ ବେଶୀ ଖରାପ ହୋଇଯାଏ ଓ ତାହାକୁ ଉପାଡ଼ି ଦେବାକୁ ହୁଏ ।

ପାକଳ ଦାନ୍ତ ପଡ଼ିଗଲେ ଖୁବ୍ ଅଳ୍ପ ଅସାଧାରଣ ଓ ବିଶେଷ ଲୋକଙ୍କର ତୃତୀୟ ଥର ପାଇଁ ଦାନ୍ତ ଉଠେ । ଯେଉଁ ଜାଗାରେ ଦାନ୍ତ ଉପୁଡ଼ା ଯାଇଥାଏ । ମୋର ପତ୍ନୀଙ୍କର ଏଭଳି ତୃତୀୟ ଦାନ୍ତ ଉଠିଥିଲା । କିନ୍ତୁ ସାପ, ଝିଟିପିଟି ଓ କୁମ୍ଭୀରମାନଙ୍କର ଦାନ୍ତ ଅନେକ ଥର ଉଠିପାରେ । ଗୋଟିଏ ଦାନ୍ତ ପଡ଼ିଗଲେ ସେଠାରେ ଆଉ ଗୋଟିଏ ଉଠିଯାଏ । ପେଡ୍ରୋ ଏକଥା ଜାଣିଥିଲେ । ସେ ରୋଜାର ଗୁଡ଼ାଏ ପୁରୁଣା ଦାନ୍ତ ଗୋଟାଇ ରଖିଥିଲେ ଓ ସେଥିରେ ତାଙ୍କ ସ୍ତ୍ରୀଙ୍କ ପାଇଁ ଗୋଟିଏ ହାର ଗଢ଼ାଇଛନ୍ତି ।

ତେଣୁ ସେ ଜାଣିଲେ ଯେ ଜେସିଣ୍ଟୋର ପୁରୁଣା ଦାନ୍ତର ମୂଳ ଓ ତାହା ଉପରେ ଲାଗିଥିବା ସୁନାମୁଣ୍ଡି ଖସିଯାଇ ଖୁଆଡ଼ ଭିତରେ କେଉଁଠି ପଡ଼ିଛି । ସେ ଭିତରକୁ ଯାଇ ତାହା ଖୋଜିଥା'ନ୍ତେ, କିନ୍ତୁ ଦାନ୍ତ ଡାକ୍ତରଙ୍କ ପାଖକୁ ଯିବାପରେ ଜେସିଣ୍ଟୋ ଖୁବ୍

ବଦରାଗୀ ହୋଇଯାଇଥିଲା । ତେଣୁ ତା'ର ଖୁଆଡ଼ ଭିତରେ ଗୁରୁଣ୍ଡି ଗୁରୁଣ୍ଡି ଘୁନାଦାନ୍ତ ଖୋଜିବା ପାଇଁ ପେଡ୍ରୋ ଡରୁଥିଲେ । କାରଣ ଜେସିଣ୍ଟୋ ପଛରୁ ଆସି ତାଙ୍କ ଗୋଡ଼କୁ କାମୁଡ଼ି ଦେଇପାରେ । ସେ ଅତି ଗରିବ ଥିବାରୁ ଜୋତା ହଳେ କିଣିପାରି ନ ଥିଲେ ।

ମାଲିକ ଯଦି ତାଙ୍କୁ ବାଡ଼ି ଧରି ଗୋଡ଼ାଇବେ, ତେବେ କ'ଣ କରିବାକୁ ହେବ ପେଡ୍ରୋ ତାହା ଜାଣିଥିଲେ । କୁମ୍ଭୀର ରହୁଥିବା ଗାଡ଼ିଆ ପାଖକୁ ସେ ଧାଇଁଗଲେ ଓ ରୋଜାକୁ ଡାକପକାଇଲେ । ରୋଜା ନସର ପସର ହୋଇ ପୋଖରୀରୁ ବାହାରି ଆସିଲା ଓ ତା'ର ପଛଗୋଡ଼ ଉପରେ ବସିପଡ଼ିଲା । ଶ୍ରୀ ଏସ୍‌ପ୍ଲେଣ୍ଡିତୋ ତାଙ୍କର ବଡ଼ ବାଡ଼ି ଖଣ୍ଡ ଧରି ପେଡ୍ରୋଙ୍କୁ ଗୋଡ଼ାଇବାରେ ଲାଗିଲେ ଓ ପେଡ୍ରୋ ରୋଜାର ଚାରିପଟେ ବୁଲି ବୁଲି ବାଡ଼ିଠାରୁ ଦୂରେଇ ରହିବାରେ ଲାଗିଲେ ।

ଶ୍ରୀ ଏସ୍‌ପ୍ଲେଣ୍ଡିତୋ ରୋଜା ଓ ପୋଖରୀ ମଝିରେ ଦଉଡ଼ିବାକୁ ଲାଗିଲେ । ତା'ର ସାଙ୍ଗକୁ କେହି ଗୋଡ଼ାଉଥିବାରୁ ରୋଜା ରାଗିଗଲା ଓ ପାଟି ମେଲାଇ କୁମ୍ଭୀରମାନେ ରାଗିଗଲେ ଯେପରି ଚିତ୍କାର କରନ୍ତି ସେଭଳି ପାଟିକଲା । ସେହି ଗର୍ଜନ ଥିଲା ଘୁଉ ଘୁଉ କରିବା, ଖେଙ୍କିବା, ଭୁକିବା ଓ ଗାଉଁ ଗାଉଁ କରିବା ଶବ୍ଦର ମଝି ମଝିଆ ଏକ ସ୍ୱର ।

ତୁମେ ଯଦି ଭାଗ୍ୟବାନ ହୋଇଥିବ ତେବେ ଚିଡ଼ିଆଖାନାର କୌଣସି ଜଗୁଆଳି ହାତରେ ଗୋଟିଏ କୁମ୍ଭୀରକୁ କେଞ୍ଚାଇଲେ ସେ ସେମିତି ଶବ୍ଦ କରିପାରେ । କିନ୍ତୁ ଦୁଇଟି କାରଣରୁ ତୁମେ ନିଜେ କୁମ୍ଭୀରକୁ କେଞ୍ଚିବା ଉଚିତ ନୁହେଁ । ପ୍ରଥମଟି ହେଲା, କେଞ୍ଚିବାକୁ ଚେଷ୍ଟା କରି ବାଡ଼ ଉପରେ ଅତିବେଶୀ ନଇଁ ପଡ଼ିଲେ ତୁମେ କୁମ୍ଭୀର ଥିବା ଗାଡ଼ିଆ ଭିତରକୁ ପଡ଼ିଯାଇପାର । *(ମୁଁ ଏହି ଗପଟି ଲେଖିବା ପରେ କୁମ୍ଭୀର ଗାଡ଼ିଆକୁ ତାରଜାଲିରେ ଘେରାଯାଇଛି, ତେଣୁ ତୁମେ ଚାହିଁଲେ ବି ତାହା ଭିତରକୁ ଗଳିପଡ଼ିବ ନାହିଁ)* । ଦ୍ୱିତୀୟରେ, କୁମ୍ଭୀରକୁ କେଞ୍ଚୁଥିଲା ବେଳେ ଯଦି ଜଗୁଆଳି ତୁମକୁ ଧରିନିଏ ତେବେ ତୁମକୁ ଚିଡ଼ିଆଖାନାରୁ ତଡ଼ି ଦିଆଯିବ ଓ ଆଉ ଆସିବାକୁ ଦିଆଯିବ ନାହିଁ । ଏହା ନିଶ୍ଚୟ ବଡ଼ ଖରାପ କଥା ହେବ ଓ ଭାବିବା ପାଇଁ ମଧ୍ୟ ତାହା ଏକ ଭୟଙ୍କର ଦଣ୍ଡ । ତେବେ କୁମ୍ଭୀର ତୁମକୁ ଖାଇଦେବା ଭଳି ଖରାପ କଥା ତାହା ହେବ ନାହିଁ ।

କିନ୍ତୁ ରୋଜା ହେଉଛି କୋଡ଼ିଏ ଫୁଟ ଲମ୍ବା, ଚିଡ଼ିଆଖାନାର ବଡ଼ କୁମ୍ଭୀରମାନଙ୍କ ଲମ୍ବର ପ୍ରାୟ ଦୁଇଗୁଣ । ମୋଟେଇରେ ବି ସେ ଦୁଇଗୁଣ । ଯେଉଁ ଶବ୍ଦ ସୃଷ୍ଟି କରୁଥିଲା, ତାହା ସତରେ ଖୁବ୍ ଭୟଙ୍କର ଥିଲା । ସବୁ ଦାନ୍ତ ସହିତ ତା'ର ମେଲା ପାଟିଟି ଗୋଟିଏ ଦୁଆର ମୁହଁ ଭଳି ବିରାଟ ଦେଖାଯାଉଥିଲା । ଶ୍ରୀ ଏସ୍‌ପ୍ଲେଣ୍ଡିତ୍ରୋ ଏତେ ଡରି ଯାଇଥିଲେ ଯେ ସେ ନିଜର ଭାରସାମ୍ୟ ହରାଇ ପୋଖରୀ ଭିତରକୁ ଗଳିପଡ଼ିଲେ ।

ତା'ର ଖାଇବା ସମୟ ହୋଇଯାଇଥିବାରୁ ଜୋଆଓ ପାଟି ମେଲା କରି ପୋଖରୀ

ଧାରରେ ଅପେକ୍ଷା କରିଥିଲା । ଏବଂ ତାହା ହିଁ ହେଲା, ଯଦିଓ ସେଭଳି ହେବ ବୋଲି କେହି ଭାବି ନ ଥିଲେ । କାରଣ ସେ ଶ୍ରୀ ଏସ୍‌ପ୍ଲେଣ୍ଡିଡ୍ରୋଙ୍କୁ ସେ ଏତେ ଶୀଘ୍ର ଖାଇଦେଲା ଯେ ତାଙ୍କର ପାଟିରେ ଥିବା ଜଳନ୍ତା ସିଗାର ଲାଗିକରି ଜୋଆଓର ଜିଭ ପୋଡ଼ିଗଲା । ଖୁବ୍ ଶୀଘ୍ର ଖାଇଲେ ଯେପରି ଆମର ଜିଭ ପୋଡ଼ିଯାଏ ଓ ଠିକ ପାନେ ମିଳେ ।

ଜୋଆଓ କିନ୍ତୁ ରୋଜା ପାଇଁ ଗୋଡ଼ଟିଏ ଛାଡ଼ିଥିଲା । ନଚେତ ରୋଜା ତାକୁ ଲାଞ୍ଜରେ ପିଟିଥା'ନ୍ତା । ଏହି ଭାବରେ ଶ୍ରୀ ଏସ୍‌ପ୍ଲେଣ୍ଡିତୋ ଶେଷ ହୋଇଗଲେ । କେହି ଜାଣନ୍ତି ନାହିଁ କେତେ ସମୟ ଧରି ତାଙ୍କର ସୁନାଘଡ଼ିଟି ଜୋଆଓ ପେଟରେ ଟିକ୍ ଟିକ୍ କରି ଚାଲିଥିବ, କାରଣ ଜୋଆଓ ପୋଖରୀ ମଝିକୁ ଯାଇ ଶୋଇପଡ଼ିଥିଲା । ଯଦି କେଉଁ ସାହସୀ ଲୋକକୁ ତୁମେ ଜାଣିଥିବ କିଏ ପୋଖରୀ ମଝିକୁ ଯାଇ, ମଣିଷଖିଆ କୁମ୍ଭୀରମାନଙ୍କ ଭିତରେ ପଶି, ଗୋଟିକର ପେଟରେ କାନଦେଇ ଶୁଣିବାକୁ ଚେଷ୍ଟାକରିବ, ତେବେ ମୁଁ ସେଭଳି ଲୋକକୁ ଭେଟିବାକୁ ଚାହେଁ ।

ପେଡ୍ରୋକୁ ଗିରଫ କରି ବିଚାରପତିଙ୍କ ପାଖକୁ ନିଆଗଲା । ସେ ପେଡ୍ରୋଙ୍କ କଥା ଶୁଣିକରି କହିଲେ, "ମୁଁ ଭାବୁଛି ଶ୍ରୀ ଏସ୍‌ପ୍ଲେଣ୍ଡିତୋ ନିଜ କାମର ଠିକ ଫଳ ପାଇଛନ୍ତି । ଏହା ତୁମର ଭୁଲ ନ ଥିଲା, ତେଣୁ ମୁଁ ତୁମକୁ ଛାଡ଼ିଦେଉଛି ।"



ସପ୍ତାହେ ପରେ ଜଣେ ଆମେରିକୀୟ ଶ୍ରୀ ଫାଇସ୍ ଶ୍ରୀ ଏସ୍‌ପ୍ଲେଣ୍ଡିତୋଙ୍କ ବିଧବା ପତ୍ନୀଙ୍କଠାରୁ ରୋଜାକୁ କିଣିନେଲେ ଓ ତା'ର ଦେଖାଶୁଣା କରିବା ପାଇଁ ପେଡ୍ରୋଙ୍କୁ ମଧ୍ୟ ନିଯୁକ୍ତକଲେ । ସେମାନେ ଏବେ ସର୍କସରେ କାମ କରନ୍ତି । ଏହା ଭିତରେ ରୋଜା ମଧ୍ୟ ଆଉ ଦୁଇଟି କୌଶଳ ଶିଖିଗଲାଣି । ସେ ଏବେ ପାଇପରେ ଧୂଆଁ ଟାଣୁଛି ଓ ତା'ର ଲାଞ୍ଜ ପିଟି ବାଜା ସହିତ ତାଳ ଦେଇପାରୁଛି । ପେଡ୍ରୋ ଆଗରୁ ଯେତିକି ଦରମା ପାଉଥିଲେ ଏବେ ତା'ର ୧୫ଗୁଣ ପାଉଛନ୍ତି । ସେ ସର୍କସ ଯଦି କେବେ ଇଂଲଣ୍ଡକୁ ଆସେ, ତେବେ ତାକୁ ନିଶ୍ଚୟ ଦେଖିବ ।



ମୋର କୁହୁକ ବେକ ବୋତାମ

# ମୋର କୁହୁକ ବେକ ବୋତାମ

ବୋଧହୁଏ ତୁମେ ଭାବୁଛ ଯେ ଆଜିକାଲି ଭୂତପ୍ରେତ, ଡାହାଣୀ, ଯାଦୁକର କିମ୍ବା ପରୀମାନେ ଆଉ ନାହାନ୍ତି । ଅବଶ୍ୟ ଛବି ବହିରେ ସେମାନେ ଯେମିତି ବେଶରେ ଦେଖାଯା'ନ୍ତି, ସେମିତି ପୋଷାକ ପିନ୍ଧି ସେମାନେ ଏବେ ବୁଲୁ ନାହାନ୍ତି । ପ୍ରଜାପତିର ଡେଣା ଲଗାଇଥିବା ଛୋଟ ଛୋଟ ପରୀମାନେ ଚିମିନୀ ଉପରେ ବସିଥିବା କଥା ହେଣ୍ଡନ୍ ଠାରେ ଦେଖିବାକୁ ମିଳୁନାହିଁ କିମ୍ବା ଗୋଜିଆ ଟୋପି ପିନ୍ଧିଥିବା ବୁଢ଼ୀମାନେ ଝାଡୁରେ ବସିକରି ଅକ୍ସଫୋର୍ଡ ରାସ୍ତା ଉପରେ ଆଗକୁ ଯିବାପାଇଁ ସବୁଜ ଆଲୁଅକୁ ଅପେକ୍ଷା କରି ବସୁନାହାନ୍ତି । କିନ୍ତୁ ସେମାନେ ଅନ୍ୟ କେତେ କାମ କରୁଛନ୍ତି । ଭଲ ଯାଦୁକରମାନେ ଏବେ ମଧ୍ୟ ରେଡ଼ିଓ ଓ ରସାୟନ ବିଜ୍ଞାନ ପରି ଯାଦୁକରୀ କାମରେ ଲାଗିଛନ୍ତି । ତୁମର ଦେହ ଖରାପ ଥିଲେ ଡାକ୍ତର ଆସି ଖଣ୍ଡେ କାଗଜରେ ଔଷଧ ଲେଖିଦିଅନ୍ତି ଏବଂ ତାକୁ ଦେଖିକରି ଔଷଧ ଦୋକାନୀ ବୋତଲରେ ତୁମକୁ କିଛି ଔଷଧ ଦିଅନ୍ତି । ସେ ଔଷଧ ଯଦି ଠିକ କାମ ଦିଏ, ତେବେ ସେ କାଗଜ ଖଣ୍ଡକ ପ୍ରକୃତରେ ଗୋଟିଏ ଯାଦୁମନ୍ତ୍ର ଓ ଔଷଧଟି ଯାଦୁପାଣି ହିଁ ଥିଲା । ସେମିତି ପରୀମାନଙ୍କୁ ଆମେ ସବୁ ପ୍ରକାରର ଜାଗାରେ ସାଧାରଣ ମଣିଷର ଚେହେରା ଓ ବେଶପୋଷାକରେ ଦେଖିଥାଉଁ ।

ତୁମେ ହୁଏତ ପଚାରିବ, "ସେମାନେ ଯେ ପରୀ ତାହା ତୁମେ କିପରି ଜାଣିଲ ?" ଠିକ ଅଛି, ମୁଁ ତୁମକୁ ତାହା ବୁଝାଇ ଦେଉଛି । ଅନେକ ସମୟରେ ମୁଁ ପରୀ ଓ ଯାଦୁକରମାନଙ୍କୁ ଜାଣିପାରେ କାରଣ ମେଲୁସିନ ନାମକ ଜଣେ ପରୀଙ୍କର ମୁଁ ବଂଶଧର । ପ୍ରାୟ ଆଠଶହ ବର୍ଷ ପୂର୍ବେ ଲୁସିଗ୍ନାନର କାଉଣ୍ଟ ରେମଣ୍ଡିନ୍‌ଙ୍କୁ ସେ ବିବାହ କରିଥିଲେ ଏବଂ ତାଙ୍କର ଦଶଟି ପୁଅ ଥିଲେ । ଦ୍ୱିତୀୟ ହେନେରୀଙ୍କ ପରେ ଇଂଲଣ୍ଡର ସବୁ ରାଜା ମେଲୁସିନଙ୍କ ବଂଶରୁ ଆସିଥିଲେ । ରାଜା ଦ୍ୱିତୀୟ ହେନେରୀ ଏବଂ ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ରିଚାର୍ଡ ପ୍ରଥମ ଓ ଜନ୍ ଖୁବ୍ ବଦ୍‌ରାଗୀ ଥିଲେ । ସେ ସମୟର ଲୋକମାନେ କହୁଥିଲେ ଯେ ସେହି ରାଜାମାନେ ଗୋଟିଏ ପରୀ ବଂଶରୁ ଆସିଥିବାରୁ ଏପରି ରାଗୀ ହୋଇଛନ୍ତି । ହେନେରୀ ରାଗିଗଲେ ତାଙ୍କର ଶୋଇବା ଲୁଗାକୁ ଦାନ୍ତରେ ଚିରି

ପକାଉଥିଲେ । କିନ୍ତୁ ଅନ୍ୟ ସମୟରେ ସେ ଭାରି ଖୁସ୍‌ମିଜାଜୀ ରାଜା ଥିଲେ । ରାଜା ଜର୍ଜ ଓ ମୁଁ ଦ୍ୱିତୀୟ ହେନେରୀଙ୍କ ବଂଶଧର । ହେଲେ ଜର୍ଜ ସିଂହାସନ ପାଇଲେ, କିନ୍ତୁ ମୁଁ ପାଇଲି ହେନେରୀଙ୍କର ରାଗୀ ମିଜାଜ । ଅବଶ୍ୟ ରାଜା ହେନେରୀଙ୍କ ପରି ମୋର ମିଜାଜ ଏତେ କଡ଼ା ନୁହେଁ । ଅବଶ୍ୟ ତୁମେ ଆଶାକରିବା ଉଚିତ ନୁହେଁ ଯେ ସାତଶହ ବର୍ଷ ତଳର ମିଜାଜ ଟିକିଏ ନରମି ନ ଯାଇ ସବୁବେଳେ ସେମିତି କଡ଼ା ରହିଥିବ । ହେନେରୀଙ୍କ ସମୟ ତୁଳନାରେ ଏବେକାର ରାଜମୁକୁଟ ବେଶୀ ଭଲ । କାରଣ ରାଜା ହେନେରୀଙ୍କ ପରେ ଅନେକ ଲୋକ ହୀରା ଖୋଳିବାରେ ଲାଗିଛନ୍ତି ଓ ସେଥିରୁ ବେଶ୍ କିଛି ସେ ମୁକୁଟରେ ଖଞ୍ଜାଯାଇଛି । ଲଣ୍ଡନ ଟାୱାରକୁ ଗଲେ ତୁମେ ଏହା ଦେଖିପାରିବ ।

ହଁ, ମୁଁ ଆଉ ଗୋଟିଏ କଥା କହିବାକୁ ଭୁଲି ଯାଇଥିଲି । ମେଲୁସିନ୍ ପ୍ରତି ଶନିବାର ଦିନ ଅଣ୍ଟାରୁ ତଳକୁ ସାପ ହୋଇଯାଉଥିଲେ । ଏ ବିଷୟରେ ତୁମେ ଯଦି ଅଧିକ ଜାଣିବାକୁ ଚାହଁ, ତେବେ ମୋ ସ୍ତ୍ରୀ ଲେଖିଥିବା ଗୋଟିଏ ବହି ପଢ଼ିପାରିବ ।

ମୁଁ ଶେଷଥର ପାଇଁ ଗୋଟିଏ ପରୀ ଦେଖିଥିଲି ୱାଣ୍ଡସ୍‌ୱର୍ଥରେ । ସେଠାରେ ସେ ଗୋଟିଏ କୁହୁକ ଦୋକାନ ଖୋଲିଥିଲେ । ସେହି ଦୋକାନ ଝରକାରେ ତୁମେ ସବୁବେଳେ କଲମଛୁରୀ, ମିଷ୍ଟାନ୍ନ, ଦୁଗ୍ଧପାତ୍ର, ଚକି, ତରାଜୁ, ବଟକରା ଓ ଅଳଙ୍କାର ଭଳି ବିଭିନ୍ନ ପ୍ରକାରର ଜିନିଷ ଦେଖିପାରିବ । ପରିବା ଦେକାନୀ, ମାଛ ଦୋକାନୀ ବା ଦରଜୀଙ୍କ ଭଳି ପରୀମାନେ ତାଙ୍କ ଦୋକାନରେ କେବେ କେବଳ ଗୋଟିଏ ପ୍ରକାରର ଜିନିଷ ରଖନ୍ତି ନାହିଁ । ପରୀମାନେ ବଡ଼ ଦୋକାନ ମଧ୍ୟ କରନ୍ତି ନାହିଁ, କୁହୁକ ଜିନିଷ ବିକିବା ପାଇଁ କାହାକୁ ବିଶ୍ୱାସ କରିହେବନାହିଁ । କାରଣ ସେମାନେ ଲୋକଙ୍କୁ ଭୁଲ ଜିନିଷ ବିକି ପକାଇବେ । ଯେପରି ହଳେ କୁହୁକ ଜୋତା ସିନା ଜଣେ ଡାକବାଲାର ଦରକାର, ବସ୍ ଡ୍ରାଇଭର ତାକୁ ନେଇ କରିବ ବା କ'ଣ ? ଜଣେ ଟ୍ରାଫିକ୍ ପୋଲିସକୁ ଅଦୃଶ୍ୟ ହେବା ଟୋପିଟିଏ ବିକିଲେ ସେ ଅଦୃଶ୍ୟ ହୋଇଯିବେ ଓ ତାଙ୍କ ଉପରେ ଗାଡ଼ିମଟର ମାଡ଼ିଯିବେ । ସେ ବି ହାତ ଟେକିଲେ କେହି ଦେଖିପାରିବେନାହିଁ । କିନ୍ତୁ ଜଣେ ଝରକା କାଚ ପୋଛାଳୀ ସେ ଟୋପି ପିନ୍ଧିଲେ ଆଲୁଅ ନଅଟକାଇ ତାଙ୍କ କାମ କରିପାରିବେ । ସେମିତି ବି ଦରଜୀ ନିଜକୁ ଅଦୃଶ୍ୟ କରି ଝରକାରେ ଥିବା ମୂର୍ତ୍ତିଗୁଡ଼ିକୁ ଘୁଞ୍ଚାଇ ପାରିବେ । ଫଳରେ ସେବାଟେ ଯାଉଥିବା ଲୋକମାନେ ଅଟକିଯାଇ କହିବେ, "କେତେ ବଢ଼ିଆ ଯନ୍ତ୍ରଟିଏ" ଏବଂ ସେଥିରୁ କେତେ ଜଣ ଭିତରକୁ ଆସି ନୂଆ ଟୋପି, ଟ୍ରାଉଜର, ସ୍କାର୍ଟ ଓ ୱେଷ୍ଟକୋଟ ଆଦି ଜିନିଷପତ୍ର କିଣିବେ ।

ଦୋକାନଟିରେ କିଛି କୁହୁକ ଥିବା ଭଳି ମୋତେ ଲାଗିଲା, ତେଣୁ ମୁଁ ତାହା ଭିତରକୁ ଗଲି । ତା'ଛଡ଼ା ମୋର ବେକ ବୋତାମ ହଜିଯାଇଥିବାରୁ ମୁଁ ନୂଆଟିଏ କିଣିବା

ପାଇଁ ଖୋଜୁଥିଲି । ମୁଁ ଗୋଟିଏ କାଗଜ କ୍ଲିପ୍ ମାରି ଜାମାର ବେକ ବନ୍ଦ କରିଥିଲି, କିନ୍ତୁ ତା'ର ମୁନ ମୋର ବେକରେ ଫୋଡ଼ି ହେଉଥିଲା । ଦୋକାନର କାଉଣ୍ଟରରେ ଏକ ସୁନ୍ଦରୀ ଭଦ୍ରମହିଳା ବସିଥିଲେ । ତାଙ୍କର ବାଳ ପାଚିଯାଇଥିଲା, କିନ୍ତୁ ପାଚଲା ବାଳ ସହିତ ଆଶା କରାଯାଉଥିବା କୁଞ୍ଚନ ତାଙ୍କ ମୁହଁରେ ନ ଥିଲା । ମୁଁ ତାଙ୍କୁ ଗୋଟିଏ ନୂଆ ବେକ ବୋତାମ ମାଗିଲି ।

ସେ ପଚାରିଲେ, "ଆପଣ କ'ଣ ଏଇ ଗୋଟିଏ ଜିନିଷ ହଜାଇଛନ୍ତି ?"

ମୁଁ କହିଲି, "ନାଁ, ପ୍ରକୃତରେ ମୁଁ ମୋର ମିଜାଜ ବି ହରାଇଛି ।"

ସେ କହିଲେ, "ହାୟ, ଆଶା କରୁଛି ତାହା ବିଶେଷ ମୂଲ୍ୟବାନ ମିଜାଜ ନଥିଲା । ମିଜାଜ ହଜିଗଲେ କ'ଣ କରାଯାଇପାରିବ ? କିଛି ଲୋକ ଖବରକାଗଜରେ ବିଜ୍ଞାପନ ଦିଅନ୍ତି । ଯଥା – 'ପୁରୁଣା କେଣ୍ଟ ରାସ୍ତାରେ ଅଗଷ୍ଟ ୨୮ ତାରିଖ ଶୁକ୍ରବାର ଦିନ କମଳା ଓ ବାଇଗଣୀ ରଙ୍ଗର ଛିଟ ଥିବା ଏକ ପାଟଳ ରଙ୍ଗର ମିଜାଜ ମୁଁ ହଜାଇଛି । ବିସ୍କ୍ଲାଭରେଟ୍ ନାଁରେ ଡାକିଲେ ସେ ଶୁଣେ । ଏହାକୁ ପାଇଥିବା ଲୋକଙ୍କୁ ପ୍ରଜାପତି ସିଗାରେଟ୍ କାର୍ଡର ସେଟ୍‌ଟିଏ ବା ରେଡ଼ିଓ ଟାଇମ୍‌ସ ପତ୍ରିକାର ବନ୍ଧେଇ ଭଲ୍ୟୁମଟିଏ ପୁରସ୍କାର ଭାବରେ ଦିଆଯିବ ।' ଅବଶ୍ୟ ରୋମାନ କ୍ୟାଥଲିକମାନେ ସେଣ୍ଟ ଆଣ୍ଟୋନୀଙ୍କ ପାଇଁ ମହମବତୀ ଜାଳନ୍ତି, ଯେକୌଣସି ଜିନିଷ ହଜାଇଦେଲେ ସେମାନେ ଏଭଳି କରିଥା'ନ୍ତି । ବାଟେର୍ସିଆର 'ହୃତ ମିଜାଜ' ଘରକୁ ଯାଇଥା'ନ୍ତି । ମାତ୍ର ସେମାନେ ଏତେଗୁଡ଼ିଏ ମିଜାଜ ଭିତରେ ନିଜ ମିଜାଜକୁ ଚିହ୍ନିପାରନ୍ତି ନାହିଁ ।"

"ମୁଁ ଭାବୁଛି ମୋର ମିଜାଜକୁ ମୁଁ ଠିକ ଚିହ୍ନି ପାରିବି । କାରଣ ଏହା ଏକ ବିଶେଷ ଧରଣର ଓ ପ୍ରାୟ ଆଠଶହ ବର୍ଷର ପୁରୁଣା । ଏହା ମେଲୁସିନ୍ ନାମକ ଜଣେ ଭଦ୍ର ମହିଳାଙ୍କର ଥିଲା । ଅବଶ୍ୟ ଏହାର ଠାଏ ଠାଏ ଚେପା ହୋଇଯାଇଛି, କିନ୍ତୁ ତାହା ହେଉଛି ଗୋଟିଏ ଅସଲି ମିଜାଜ, ଆଜିକାଲି ତିଆରି ହେଉଥିବା ଚେଁ ଚେଁଇଆ ଶୁକୁଟା ମିଜାଜ ନୁହେଁ ।"

"ତୁମେ କ'ଣ ଏହାକୁ କେଉଁ ପୁରୁଣା ଜିନିଷର ଦୋକାନରୁ କିଣିଥିଲ ?"

"ନାଁ ନାଁ, ଏହା ମୋର ପରିବାରର ସମ୍ପତ୍ତି ।"

"ଭଲ ହେଲା । ଆଜି ମେଲୁସିନ୍‌ଙ୍କର ଜଣେ ଉତ୍ତରାଧିକାରୀଙ୍କୁ ଭେଟିଥିବାରୁ ମୁଁ ବିଶେଷ ଆନନ୍ଦିତ । ମୁଁ ତାଙ୍କୁ ଭଲ ଭାବରେ ଜାଣିଥିଲି । ତାଙ୍କର କୌଣସି ମିଜାଜ ହଜିଗଲେ ମୁଁ ଖୁବ୍ ଦୁଃଖିତ ହେବି । ଅବଶ୍ୟ ତାଙ୍କର ମିଜାଜ ହଜିବାଟା ଏତେ ବିଚିତ୍ର କଥା ନୁହେଁ । ଜିଓଫ୍ରି ଗ୍ରସ୍‌ଡେଣ୍ଟ (ଯାହାର ଅର୍ଥ ବଡ଼ଦାନ୍ତ) ନାମରେ ତାଙ୍କର ଜଣେ

ପୁଅ ଥିଲା । ସେ ତା'ର ମିଜାଜକୁ ଏତେଥର ହଜାଉଥିଲା ଯେ ଶେଷରେ ସେଥିରେ ଗୋଟିଏ କଡ଼ା ଲଗାଇ ଜଞ୍ଜିର ବନ୍ଧା ହେଉଥିଲା । ତୁମେ ଯଦି ଚାହିଁବ ମୁଁ ତୁମ ପାଇଁ ସେମିତି କରିଦେବି । ଏବେ ଆମେ ବେକ ବୋତାମ କଥା ଦେଖିବା । ମୋ ପାଖରେ ସବୁ ପ୍ରକାରର ଅଛି । ଏଇ ଟ୍ରେ'ରେ କିଛି ଅଦୃଶ୍ୟ ବେକ ବୋତାମ ରହିଛି ।"

ଏହାକହି ସେ ଖାଲି ଦେଖାଯାଉଥିବା ଗୋଟିଏ ଟ୍ରେ ମୋ ଆଡ଼େ ବଢ଼ାଇଦେଲେ ।

"ତୁମକୁ ବହୁତ ଧନ୍ୟବାଦ । କିନ୍ତୁ ଏଭଳି ଗୋଟିଏ ବୋତାମକୁ ମୁଁ ସକାଳେ ପାଇବି କି ନାହିଁ ସନ୍ଦେହ । ତା'ଛଡ଼ା ପୋଷାକ ମଧ୍ୟ ଅଦୃଶ୍ୟ ନ ହେଲେ ଅଦୃଶ୍ୟ ବୋତାମ ଠିକ ଲାଗିବ ନାହିଁ । ଅଦୃଶ୍ୟ ପୋଷାକ ପାଇଁ ସାଧାରଣ ବୋତାମଟିଏ ବି ଠିକ ହେବ ନାହିଁ । କାରଣ, ଖାଲି ବୋତାମଟି ରାସ୍ତାରେ ଚାଲୁଥିବା ଭଳି ଦେଖାଯିବ ।"

"ତେବେ ତୁମେ ଏହି ହଜାଇ ନହେଉଥିବା ବୋତାମଟି ନିଅ । ତା'ର ମୂଲ୍ୟ ହେବ ଚାରି ପେନ୍‌ସ ତିନି ଫାର୍ଦ୍ଦିଙ୍ଗ ।"

"ମୁଁ ଭାଗ୍ୟବାନ ଯେ ମୋ ପାଖରେ ଚାରି ପେନ୍‌ସ ତିନି ଫାର୍ଦ୍ଦିଙ୍ଗର ରେଜା ପଇସା ଥିଲା । କାରଣ ପରୀମାନେ ସେହି ସବୁ କଥାକୁ ଭାରି ଧରନ୍ତି । ମୁଁ ଯଦି ତିନିଟି ଫାର୍ଦ୍ଦିଙ୍ଗ ମୁଦ୍ରା ବଦଳରେ ସେହି ମୂଲ୍ୟର ଗୋଟିଏ ଅଧା ପେନି ଓ ଗୋଟିଏ ଫାର୍ଦ୍ଦିଙ୍ଗ ଯାଚିବି, ତେବେ ହୁଏତ ଦୋକାନଟି କୁଆଡ଼େ ଉଭେଇ ଯିବ ଏବଂ ମୁଁ ସେଠି ଛିଡ଼ାହୋଇ ଗ୍ଲାଡଷ୍ଟୋନଙ୍କ ମୂର୍ତ୍ତିକୁ କଥା କହିଲା ପରି ଲାଗିବ । କେହି ଯଦି ଜଣେ ପରୀକୁ ରେଜା ପଇସା ମାଗେ ତେବେ ସେ ସିଗାରେଟ ବିକ୍ରୀ କରୁଥିବା ଗୋଟିଏ ଅଟୋମେଟିକ୍ ମେସିନ୍ ଠାରୁ ଆହୁରି କିଛି ଖରାପ ଜିନିଷ ପାଇଟି ନ ଗଲେ ନିଜକୁ ଭାଗ୍ୟବାନ ମନେକରିବା କଥା । ଗୋଟିଏ ପରୀ ରୂପରେ ବର୍ଷେ ଦୁଇ ବର୍ଷ ଚଳିଲେ ତୁମେ ବୁଝିପାରିବ କାହିଁକି ପରୀମାନେ ରେଜା ପଇସା ଫେରାଇବାକୁ ଭଲ ପା'ନ୍ତିନାହିଁ ।"

ତୁମେ ଯଦି ସାଥିରେ ଫାର୍ଦ୍ଦିଙ୍ଗ ଧରି ଯିବାକୁ ପସନ୍ଦ ନ କର, ତେବେ ପରୀମାନଙ୍କ ଦୋକାନକୁ ତୁମର ନ ଯିବା ଭଲ । ଛୋଟ ବେଳେ ଅଧିକାଂଶ ପୁଅଝିଅ ସାଥିରେ ଫାର୍ଦ୍ଦିଙ୍ଗ ନେଇଥା'ନ୍ତି । କିନ୍ତୁ ବଡ଼ ହୋଇଗଲେ ସେମାନେ ତାହା କରିବାକୁ ଭଲ ପା'ନ୍ତିନାହିଁ । ଅବଶ୍ୟ ଏହା ତାଙ୍କର ବଡ଼ ଭୁଲ, କାରଣ ଇଂଲଣ୍ଡରେ ରୂପା ପେନିର ପଛକୁ ଫାର୍ଦ୍ଦିଙ୍ଗ ହେଉଛି ସବୁଠୁ ଅଧିକ ଯାଦୁକରୀ ମୁଦ୍ରା । କେବଳ ଏଥିପାଇଁ ଦରକାର ହୁଅନ୍ତା । କିନ୍ତୁ କେତେଶହ ବର୍ଷ ହେଲା ତାହା ଆଉ ତିଆରି ହେଉନାହିଁ ।

ଯାହାହେଉ ମୁଁ ମୋର ବେକ ବୋତାମ ପାଇଗଲି, ଆଉ ଏବେ ମଧ୍ୟ ତାହା ମୋ ପାଖରେ ରହିଛି । ଆଉ ମୁଁ ଭାବୁଛି ଏହା ମୋ ସହିତ କବରରେ ବି ପୋତାହେବ ।

ଏହାକୁ ମୋର ଶବାଧାର ଭିତରେ ରଖିନଦେଲେ, ତାହା ନିଶ୍ଚୟ ମୋର ଶବ ପଛରେ ରାସ୍ତାରେ ଡେଇଁ ଡେଇଁ ଚାଲିବ । ଫଳରେ ଯେଉଁମାନେ କାନ୍ଦିବା କଥା ସେମାନେ ହସିବେ । ମୁଁ ସେହି ବୋତାମକୁ ହଜାଇବାକୁ ତିନି ଚାରି ଥର ଚେଷ୍ଟା କରିଥିଲି । ଦିନେ ଝଡ଼ବତାସ ଭିତରେ ମୁଁ ତାକୁ ଗୋଟିଏ ନାଳ ଭିତରେ ପକାଇଦେଲି ଏବଂ ବର୍ଷାପାଣିର ପ୍ରବଳ ସୁଅରେ ତାହା ଭାସିଗଲା । ଅଧଘଣ୍ଟାକ ପରେ ମୁଁ ହାତ ଧୋଉଥିଲାବେଳେ ହଠାତ ତାହା ଓଦା ସର ସର ହୋଇ ପାଣିକୁଣ୍ଡ ଭିତରୁ ଡେଇଁପଡ଼ିଲା । ତା' ଜାଗାରେ ମୁଁ ଲଗାଇଥିବା ଆଉ ଗୋଟିଏ ବେକ ବୋତାମ ସହିତ ସେ ଯୁଦ୍ଧ କରିବାରେ ଲାଗିଗଲା । ସେମାନେ ଏମିତି ଲଢ଼େଇକରି ମୋ ବେକରେ ପ୍ରାୟ ଗୋଟିଏ କଣା କରିଦେଲେ ।

ଆଉଦିନେ ମୁଁ ଦକ୍ଷିଣ ଆଫ୍ରିକାରେ ଥିଲାବେଳେ ଓଟପକ୍ଷୀଟିଏ ଏହାକୁ ଖାଇଦେଲା, ଆଉ ମୁଁ ଭାବିଲି ଏଥର ଏହା ଗଲା । ତା' ଆରଦିନ ସକାଳେ ମୁଁ ଆଉ ଦୁଇଜଣ ମଣିଷ ଓ ଗୋଟିଏ କୁକୁର ମିଶିକରି ଗୋଟିଏ ଓଟପକ୍ଷୀ ଅଣ୍ଡାକୁ ଭାଜିକରି ଜଳଖିଆ କରୁଥିଲୁ । ଆଉ ଖାଇଲାବେଳେ ବୋତାମଟି ସେ ଅଣ୍ଡା ଭିତରୁ ବାହାରିଲା । କୁକୁଡ଼ା ତୁଳନାରେ ଓଟପକ୍ଷୀର ଏହା ଏକ ବଡ଼ ସୁବିଧା – ତା'ର ଗୋଟିଏ ଅଣ୍ଡାରେ ସାରା ପରିବାରର ଖାଦ୍ୟ ହୋଇଯାଏ । ଆଉ ଥରେ ଆଟ୍‌ଲାଣ୍ଟିକ ମହାସାଗର ମଝିରେ ଜାମାପଟା ଭାଙ୍ଗିକରି ରଖିଲାବେଳେ ସେ ବୋତାମଟି ଜାହାଜର ଜଳା କବାଟି ବାଟରେ ଖସି ପଡ଼ିଥିଲା । ତୁମେ ହୁଏତ ଭାବୁଥିବ ଯେ ସେ ବୋତାମଟି ରାଜା ପଲିକ୍ରେଟସ୍‌ଙ୍କ ମୁଦି ଭଳି ମୋର ଖାଇବା ମାଛରୁ ବାହାରିଥିବ । କିନ୍ତୁ ତୁମେ ଭୁଲ ଭାବୁଛ । ତାହାଠାରୁ ବେଶ୍ କମ୍ ସମୟରେ ବୋତାମଟି ମୋ ପାଖକୁ ଫେରିଆସିଲା । ଜାହାଜର ବେଗ ଜାଣିବା ପାଇଁ ଟିଣର ମାଛଭଳି ଗୋଟିଏ ଜିନିଷ ସୂତାରେ ବନ୍ଧାହୋଇ ଜାହାଜ ପଛରେ ଭାସୁଥାଏ । ଏହାକୁ ଲଗ୍ କୁହାଯାଏ । ତାହା ପାଣିରେ ଘୂରିବା ଫଳରେ ଗୋଟିଏ ସୂତାକୁ ମୋଡ଼େ ଓ ତାହା ଜାହାଜରେ ଘଣ୍ଟା ଭଳି ଗୋଟିଏ ଯନ୍ତ୍ରକୁ ଚଳାଏ । ସେଥିରୁ ନାବିକମାନେ ଜାଣିପାରନ୍ତି ସେ ଜାହାଜଟି ଘଣ୍ଟାରେ ବା ଦିନକରେ କେତେ ବାଟ ଗଲା । ସେଦିନ ହଠାତ ତା'ର ସୂତାଟି ଗୁଡ଼ାଇହେବା ବନ୍ଦ ହୋଇଗଲା । ଅସୁବିଧା କ'ଣ ଜାଣିବା ପାଇଁ ନାବିକମାନେ ତାକୁ ଉପରକୁ ଆଣିଲେ । ଦେଖିଲାବେଳକୁ ସେହି ଯନ୍ତ୍ରକୁ ଗୋଟିଏ ଦଶ ଗୋଡ଼ିଆ କଟଲ୍‌ଫିସ୍ ତା'ର ନ'ଟି ଗୋଡ଼ରେ ଛନ୍ଦିକରି ଧରିଛି ଏବଂ ତା'ର ଦଶମ ଗୋଡ଼ରେ ମୋର ବୋତାମଟି ଲାଖିରହିଛି !

ସେ ଜାହାଜରେ ପ୍ରାୟ ହଜାରେ ଯାତ୍ରୀ ଥିଲେ, ଆଉ ସେ ବୋତାମଟି ମୋର ବୋଲି ଜଣାଇବାକୁ ସେଥିରେ ମୋ ନାଁ ଲେଖାନଥିଲା । ତେଣୁ ମୁଁ ତାକୁ ଫେରି ପାଇବା କଥା ନୁହେଁ । କିନ୍ତୁ ପାଞ୍ଚ ମିନିଟ ପରେ ଜଣେ ନାବିକ ମୋ ପାଖକୁ ଆସିଲେ ଓ

ଧରାହୋଇଥିବା କଟଲ୍‌ଫିସ୍‌କୁ ଦେଖିବାପାଇଁ ମୋତେ ଡାକିଲେ । ମୁଁ ପ୍ରାଣୀବିଜ୍ଞାନ ବିଶାରଦ ନ ଥିଲି, କିନ୍ତୁ ବାଉଳାରେ ସେ ଜାହାଜରେ ଥିବା ଆଉ ଜଣେ ପ୍ରାଣୀବିଜ୍ଞାନ ଅଧ୍ୟାପକଙ୍କ ଜାଗାରେ ମୋତେ ଡାକି ଆଣିଥିଲେ । ସେ ଭାବିଥିଲେ ଯେ ମୁଁ ସେ ମାଛଟିକୁ ଚିହ୍ନଟ କରି ତା'ର ଲାଟିନ ନାଁ ତାଙ୍କୁ କହିପାରିବି । ମାଛର ନାଁ ତ ମୁଁ କହି ପାରିଲି ନାହିଁ, କିନ୍ତୁ ମୋ ବୋତାମଟି ମୁଁ ପାଇଗଲି ।

ଏହାପରେ ମୁଁ ମଜା ଦେଖିବାପାଇଁ ତାକୁ ଜାଣିଶୁଣି ହଜେଇଦେବାକୁ ଚେଷ୍ଟାକଲି । ଥରେ ମୁଁ ଗୋଟିଏ ସରୁ ରାସ୍ତାରେ ଗାଡ଼ି ଚଳାଇ ଗଲାବେଳେ ଗୋଟିଏ ବିଜ୍ଞପ୍ତି ଦେଖିଲି । ସେଥିରେ ଲେଖାଥିଲା, "ଷ୍ଟିମ୍ ରୋଲର କାମ କରୁଛି", ମୁଁ ତେଣୁ ଗାଡ଼ିକୁ ଧୀର କରିଦେଲି । ଅବଶ୍ୟ ସେଥିରେ ଯଦି ଲେଖାଥା'ନ୍ତା, "ଷ୍ଟିମ୍ ରୋଲର ଖେଳୁଛି" ତେବେ ମୁଁ ସେଠାରୁ ଯେତେ ଶୀଘ୍ର ସମ୍ଭବ ଖସି ପଳାଇଥା'ନ୍ତି । କାରଣ ଖେଳରେ ମାତିଥିବା ରୋଲରଟି ମଜାରେ ବି ମୋ ଗୋଡ଼ ଉପରେ ମାଡ଼ିଯାଇପାରେ ଓ ମୋର ପାଦକୁ ଚଟକା କରିଦେଇପାରେ । ଗତକାଲି ମୁଁ ଖବରକାଗଜରେ ଚଟକା ପାଦର ଚିକିତ୍ସା କରୁଥିବା ଜଣେ ଲୋକଙ୍କର ଗୋଟିଏ ବିଜ୍ଞାପନ ଦେଖିଥିଲି । ଗୋଡ଼ରେ ଷ୍ଟିମ୍ ରୋଲର ମାଡ଼ିଗଲେ ଲୋକମାନେ ବୋଧହୁଏ ସେଠାକୁ ଯାଇଥିବେ । କିନ୍ତୁ ଏହି ଷ୍ଟିମ୍ ରୋଲରଟି ଖୁବ୍ ପରିଶ୍ରମ କରୁଥିଲା ଓ ମୋର ଗାଡ଼ିକୁ ଅଟକାଇବାକୁ ହେଲା । ମୁଁ ମଜା ଦେଖିବାକୁ ଷ୍ଟିମ ରୋଲରର ଚକ ତଳକୁ ସେ ବୋତାମଟିକୁ ପକାଇଦେଲି । ମୁଁ ଭାବୁଛି ଏହା କରିନଥିଲେ ଭଲ ହୋଇଥା'ନ୍ତା । କାରଣ ରୋଲରର ଆଗଚକଟି ବୋତାମ ଉପରେ ଚଢ଼ିଗଲା ମାତ୍ରେ ବୋତାମଟି ଦଳି ହୋଇଯିବା ବଦଳରେ ଖୁବ୍ ଭୟଙ୍କର ଶବ୍ଦ କରି ଚକଟି ଦୁଇଖଣ୍ଡ ହୋଇଗଲା । ଡ୍ରାଇଭର ଭୀଷଣ ରାଗିଗଲେ, କାରଣ ସେ ରୋଲରଟିକୁ ଭାରି ଭଲ ପାଉଥିଲେ । ଏହା ମୋର ଭୁଲ ଥିବାରୁ ମୁଁ ଗୋଟିଏ ନୂଆଚକ କିଣିଦେବାକୁ କହିଲି । କିନ୍ତୁ ରୋଲର ତିଆରି କରୁଥିବା ଲୋକ ଜଣକ ମୋତେ ତାହା କରିବାକୁ ଦେଲେନାହିଁ । କାରଣ ସେ କହିଲେ ଯେ ମୁଁ ଯଦି ନୂଆ ଚକଟିଏ କିଣିଦେବି ତାହାଲେ ସମସ୍ତେ ତାଙ୍କୁ ଥଟ୍ଟା କରିବେ ଓ କହିବେ, "ସ୍ମିଥ୍‌ଙ୍କ ଷ୍ଟିମ ରୋଲର କିଣ ନାହିଁ । ତାହା ଗୋଟିଏ ବୋତାମକୁ ବି ଦଳିପାରିଲା ନାହିଁ ।"

ମୋ ପ୍ରତି ଖୁବ୍ ସଦୟ ହୋଇଥିବା ଜଣେ ପୁରୋହିତଙ୍କୁ ମୁଁ ଥରେ ସେ ବୋତାମଟି ଦେଇଦେଲି । ତୁମେ ଜାଣିଥିବ ଯେ ପୁରୋହିତମାନେ ତାଙ୍କର ଗଳାବନ୍ଧକୁ ଓଲଟା ଭାବରେ ପିନ୍ଧିଥା'ନ୍ତି । ତେଣୁ ତାଙ୍କର ପଛ ବୋତାମ ଆଗକୁ ଓ ଆଗ ବୋତାମଟି ପଛକୁ ରହିଥାଏ । ତାଙ୍କୁ ମୁଁ ବୋତାମଟି ଦେବାର ପ୍ରାୟ ଦୁଇଘଣ୍ଟା ପରେ ସେ ଗୋଟିଏ ବାଇବେଲରୁ ଗୋଟିଏ ପଂକ୍ତି ପଢୁଥଲେ, ଯାହା ଥିଲା, "ପ୍ରଥମଟି ଶେଷ

ହେବ ଓ ଶେଷଟି ହେବ ପ୍ରଥମ" । ସେତିକିବେଳେ ହଠାତ ତାଙ୍କ ଗଳାବନ୍ଧଟି ବୁଲିଗଲା ଓ ସାଧାରଣ ଲୋକଙ୍କ ଗଳାବନ୍ଧ ପରି ତାହାର ଖୋଲାପଟଟି ଆଗକୁ ହୋଇଗଲା । ତେଣୁ ସେ କହିଲେ, "ଏହି ବେକ ବୋତାମଟି ଅତି ଚାଲାଖ ଅଛି । ମୋର ଏପରି ବୋତାମ ଦରକାର ଯାହା ନିଜ ଜାଗାରେ ସ୍ଥିର ହୋଇ ରହିବ ।" ଏବଂ ସେହି ବୋତାମଟିକୁ ସେ ମୋ ପାଖକୁ ଫେରାଇଦେଲେ । ତେଣୁ ଏବେ ମୁଁ ଜାଣୁଛି ଯେ ମୁଁ ମଲା ଯାଏଁ ତାହା ମୋ ପାଖରେ ରହିବ, ହୁଏତ ମଲାପରେ ବି ।

"ଓହୋ ! ମୁଁ ସେହି ଦୋକାନ ଛାଡ଼ିବାର ଅନେକ ସମୟ ପରେ ଘଟିଥିବା ସବୁ ପ୍ରକାରର କଥା କହିଚାଲିଛି । ଘଟଣାଗୁଡ଼ିକୁ ତାଙ୍କର ଠିକ ସମୟ କ୍ରମରେ ରଖି ଲମ୍ବା ଗପ ଲେଖୁଥିବା ସେଇ ଚତୁର ଲୋକମାନଙ୍କ ଭଳି ମୁଁ ହୋଇଥା'ନ୍ତି କି ? ମୋ ମୁଣ୍ଡରେ ସବୁ କଥା ଯେଉଁଭଳି ଉଠିଲା, ତାହା ମୁଁ ତୁମକୁ ସେଇଭଳି କହିଚାଲିଛି ।



ବୋତାମଟି କିଣିଲା ପରେ କାଉଣ୍ଟର ପଛରେ ଥିବା ଭଦ୍ରମହିଳାଙ୍କୁ ତାଙ୍କର ନାମ ମୁଁ ପଚାରିଲି । କାରଣ ଯେହେତୁ ସେ ମୋର ଅଣ-ଅଣ-ଅଣ-ଆଇ ମେଲୁସିନ୍‌ଙ୍କୁ ଜାଣିଥିଲେ ସେ ନିଶ୍ଚୟ ଖୁବ୍ ବୁଢୀ ହୋଇଥିବେ ଓ ବହୁତ ଆଗ୍ରହଜନକ କଥା ଦେଖିଥିବେ । ସେ କହିଲେ, "ମୋତେ ତୁମେ ମିସ୍ ୱାଣ୍ଡଲ ଡାକିପାର, ଯଦିଓ ନାଁଟିଏ ପାଇବାକୁ ମୋତେ ବହୁ ସହସ୍ର ବର୍ଷ ଅପେକ୍ଷା କରିବାକୁ ହୋଇଥିଲା । ଏଭିତରେ ମୋର ସେମିତି ଦୁଇ ତିନିଟି ନାଁ ଗଲାଣି । ଆଗରୁ ମୁଁ ନଦୀରେ ରହୁଥିଲି । ମାତ୍ର ଗତ ଶତାବ୍ଦୀରେ ତାହା ଖୁବ୍ ମଇଳା ହୋଇଗଲା । ମୁଁ ଭାବୁଛି ଯେ ମୋତେ ସେଠାକୁ ଶୀଘ୍ର ଫେରିଯିବାକୁ ହେବ । ମୁଁ ଅନୁମାନ କରୁଛି ଯେ ଆଉ ଦୁଇ ତିନି ହଜାର ବର୍ଷ ପରେ ଲଣ୍ଡନରେ ବିଶେଷ କିଛି ନ ଥିବ ।"

"ଖୁବ୍ ଦରକାରୀ ଜିନିଷ ସବୁ ମିଳିପାରିଲା ଭଳି ଦୋକାନଟିଏ ତୁମେ ଏଠାରେ ଖୋଲିଥିବାରୁ ମୁଁ ପ୍ରକୃତରେ ଖୁବ୍ ଖୁସି ।"

"ଓଃ, ମୁଁ ସବୁବେଳେ ଲୋକ ଦେଖି ଠିକ ଜିନିଷମାନ ଦେଇଥାଏ । ମୁଁ ନଈରେ ରହୁଥିବା ବେଳେ ସେମାନେ ମୋ ପାଖକୁ ଆସୁଥିଲେ । ଆଠଶହ ବର୍ଷ ପୂର୍ବେ ସେମାନେ ମୋତେ ପରୀ ବୋଲି ଡାକିଲେ ଏବଂ ତା' ପୂର୍ବରୁ ରୋମର ଲୋକମାନେ ମୋତେ *ନେଆଡ୍* କହିଲେ । ଇଂଲଣ୍ଡରେ ରହୁଥିବା ମଣିଷଙ୍କ ଭିତରେ ବ୍ରୋଞ୍ଜ ଯୁଗର ମଣିଷମାନେ ବୋଧହୁଏ ସବୁଠାରୁ ଭଲ ଥିଲେ ଏବଂ ସେମାନେ ମୋତେ *ୱାସି* କହୁଥିଲେ । କିନ୍ତୁ ମୁଁ ଆଗେ ଯେତେ ସାହାଯ୍ୟ କରୁଥିଲି, ଏବେ ତାହା କରିପାରୁ ନାହିଁ । ମୋର ମନେ ପଡୁଛି ଯେ ଥରେ ଗୋଟିଏ ଅତି ଭୟଙ୍କର ଡ୍ରାଗନ ୱିମ୍ବଲଡନ୍ କମନ୍‌ରେ ରହୁଥିଲା । ଅନେକ ପ୍ରକାରର ସାମନ୍ତମାନେ ତାକୁ ମାରିବାକୁ ବହୁତ ଚେଷ୍ଟା କରିଥିଲେ । କିନ୍ତୁ କେହି କିଛି କରିପାରିଲେ ନାହିଁ । ସେ ଡ୍ରାଗନ ସେମାନଙ୍କ ଆଡ଼କୁ ନିଆଁହୁଳା ଛାଡୁଥାଏ ଓ ଲୁହାମିସ୍ତ୍ରୀର ଶିଖା ଟିଣ ଡବାକୁ କାଟିଲା ଭଳି ସେ ନିଆଁହୁଳା ସାମନ୍ତମାନଙ୍କର ସାଞ୍ଜୁକୁ ତରଳାଇ ଦେଉଥାଏ । ଦିନେ ଜଣେ ସାମନ୍ତଙ୍କୁ ସେ ତଡ଼ିଆଣି ୱାଣ୍ଡଲ ନଦୀରେ ପକାଇଦେଲା । ତାଙ୍କର ସାଞ୍ଜୁ ତାତିକରି ପୂରା ଲାଲ ଦିଶୁଥିଲା ଓ ପାଣି ଲାଗିବାରୁ ତାହା ଖୁବ୍ ଜୋରରେ ସଁ ସଁ ହେବାକୁ ଲାଗିଲା ।"

"ଭାଗ୍ୟକୁ ମୁଁ ସେଠାରେ ଥିଲି ଓ ସେ ଟିକିଏ ଥଣ୍ଡା ହୋଇଗଲା ପରେ ତାଙ୍କୁ ପାଣିରୁ ବାହାର କଲି । ଯାଇଥିବା ବୀରପୁରୁଷଙ୍କୁ ସେଥିରୁ ବାହାର କରିଦେଲି । ତା'ପରେ ମୁଁ ତାଙ୍କୁ ଖୁବ୍ ଗାଳି ଦେଇଥିଲି । ସାଧାରଣ ସାଞ୍ଜୁ ଓ ବର୍ଚ୍ଛା ଧରି ସେ କିପରି ଗୋଟିଏ କୁହୁକୀ ଜନ୍ତୁକୁ ମାରିବାକୁ ଯାଉଥିଲେ, ତାହା ମୁଁ ତାଙ୍କୁ ପଚାରିଲି । ତେଣୁ ସେ ତା'ପର ସପ୍ତାହରେ ଗୋଟିଏ ଆଜବେଷ୍ଟସ ସୁଟ୍ ପିନ୍ଧିଲେ ଏବଂ ବର୍ଚ୍ଛା ବଦଳରେ ଦୁଇଟି

ନିଆଁଲିଭା ଯନ୍ତ୍ର ସାଥିରେ ନେଇ ଡ୍ରାଗନକୁ ଆକ୍ରମଣ କଲେ । ଏଥର ସେ ଡ୍ରାଗନ ତାଙ୍କ ହାତରେ ମଲା । ପ୍ରଥମ ନିଆଁଲିଭା ଯନ୍ତ୍ରଟି ତା' ମୁହଁରୁ ନିଆଁହୁଳାକୁ ଲିଭାଇ ଦେଇଥିଲା ଓ ଦ୍ୱିତୀୟଟି ତାକୁ ମାରିଦେଇଥିଲା । ଅବଶ୍ୟ ସେତେବେଳେ ସାଧାରଣ ନିଆଁଲିଭା ଯନ୍ତ୍ର ମିଳୁ ନଥିଲା । କେବଳ କୁହୁକ ଯନ୍ତ୍ର ମିଳୁଥିଲା । ସେହି ସାମନ୍ତ ଜଣକ ଅନେକ କୃତଜ୍ଞତା ପ୍ରକାଶ କଲେ ଏବଂ ମୋର କୂଳେ କୂଳେ ଫାଙ୍କା ଥିବା ଜାଗାରେ ବହୁତ ଫୁଲଗଛ ଓ ଅନ୍ୟ ଗଛ ଲଗାଇଦେଲେ ।"

"କିନ୍ତୁ ଏବେ ସେସବୁ କୁଆଡ଼େ ଉଭେଇ ଗଲାଣି । ସେଥିପାଇଁ ମୋ ବାଳତକ ପାଚିଯାଇଛି । ତେବେ ମୁଁ ଆଶା କରୁଛି ଯେ ଦିନେ ସେ ରଙ୍ଗ ପୁଣି ଫେରିଆସିବ । ଅବଶ୍ୟ ମୁଁ କୃତଜ୍ଞ ଯେ ମୋର ନଈଟି ୱେଷ୍ଟ ବୋର୍ଣ୍ଣ ଭଳି ପାଇପ ଭିତରେ ପ୍ରବାହିତ ହେଉନାହିଁ । ସ୍ଲୋଆନ ସ୍କୋୟାର ଷ୍ଟେସନଠାରେ ରେଳଲାଇନ ଉପରେ ସେଇ ପାଇପ ଯାଇଥିବାର ତୁମେ ଦେଖିପାରିବ । ତୁମେ ମଣିଷମାନେ ସବୁ କିଛି ନଷ୍ଟଭ୍ରଷ୍ଟ କରିଦେଉଛ । ଅବଶ୍ୟ ମୁଁ ମୋର ଯୁବାବସ୍ଥାରେ ଯେତିକି ଯାହା ବିଗାଡ଼ିଥିଲି ତାହା ଭାବିଲେ ମୋର ଏକଥା କହିବାର ଅଧିକାର ନାହିଁ ବୋଲି ମନେହେବ । ପ୍ରାୟ ୪୦,୦୦୦ ବର୍ଷ ତଳେ ଏତେ ଥଣ୍ଡା ପଡ଼ିଲା ଯେ ଗୋଟିଏ ହିମବାହ ମୁସ୍‌ୱେଲ ହିଲ୍ ପାଖକୁ ମାଡ଼ିଆସିଥିଲା । ଏଠାରେ ମଧ୍ୟ ପ୍ରାୟ ବର୍ଷ ସାରା ବରଫ ରହୁଥିଲା । ଯେତେବେଳେ ଟିକିଏ ଉଷୁମ ପଡ଼ିଲା ଆଉ ବରଫ ତରଳିଲା, ସେତେବେଳେ ନଈମାନଙ୍କୁ ଦେଖିବା କଥା । ସେତେବେଳେ ୱାଣ୍ଡଲ ନଦୀ କେବେ କେବେ ଆଜିର ଟେମ୍‌ସ ନଦୀ ପରି ଫୁଲିଉଠୁଥିଲା । ଯେତିକି କାଦୁଅ ଆମେ ବୁହାଇ ନେଉଥିଲୁ ତାହା ସତରେ ଭୟଙ୍କର ଥିଲା । ହଁ, ମୋ ସମୟରେ ମୁଁ ବେଶ୍ କିଛି ବିଗାଡ଼ିଛି ।

"ଆଉ କିଛି ଆଜି ମୁଁ ତୁମକୁ ଦେଖାଇବି କି? ମୋ ପାଖରେ କିଛି ଭଲ କୁହୁକ ଲୁଗା ଚୁପୁଡ଼ା ଯନ୍ତ୍ର ଅଛି । ତୁମେ ଚାହିଁଲେ କିଛି କୁହୁକ ଜୋତାଫିତା ବି ଦେଖିପାରିବ । କିନ୍ତୁ ତାହା ତୁମକୁ ଅସୁବିଧାରେ ପକାଇପାରେ ।"

ମୁଁ ନିଶ୍ଚିତ ଭାବରେ କୁହୁକ ଜୋତାଫିତା ଚାହୁଁନଥିଲି । କାରଣ ଆଗରୁ ମୁଁ ମ୍ୟାକ୍‌ଫାର୍‌ଲାନ୍‌ସ ନାଁର ଜଣେ ଲୋକଙ୍କୁ ଜାଣିଥିଲି । ସେ ଥରେ ହଳେ କୁହୁକ ଜୋତାଫିତା କିଣି ଆଣିଥିଲେ । ସେଗୁଡ଼ିକ ହୁଗୁଳିକରି ଫିଟିଯାଏନାହିଁ, ସେ ଦୃଷ୍ଟିରୁ ତାହା ଖୁବ୍ ଭଲ । ଥରେ କିନ୍ତୁ ଫିତାକୁ ଫିଟାଇବାର ମନ୍ତ୍ରଟି ସେ ଭୁଲିଗଲେ । ତେଣୁ ତିନିମାସ ଧରି ତାଙ୍କୁ ଜୋତା ପିନ୍ଧି ଶୋଇବାକୁ ପଡ଼ିଥିଲା । ଶେଷରେ ଠିକ ମନ୍ତ୍ରଟି ଜାଣିଥିବା ଜଣେ ଯାଦୁକରଙ୍କୁ ଭେଟିବାରୁ ସେ ରକ୍ଷା ପାଇଲେ । ତା'ପରଠାରୁ ସେ ନିଜ ଟିପା ଖାତାରେ ସେ ମନ୍ତ୍ରକୁ ଲେଖିରଖିବାରୁ ଆଉ କିଛି ଅସୁବିଧା ହୋଇନଥିଲା । ମାତ୍ର କିଛି ଦିନ ପରେ

ସେ ଜୋତା ହଳକ ଘୋରି ହୋଇଗଲା । ତେଣୁ ଦିନେ ତାଙ୍କ ସ୍ତ୍ରୀ ମରାମତି ପାଇଁ ତାକୁ ମୋଚି ପାଖକୁ ପଠାଇଦେଲେ । ଗୋଟିଏ ସାଧାରଣ ଦୋକାନକୁ ପଠାଯିବାଟା ସେ ଫିତା ଦୁଇଟିର ପସନ୍ଦ ହେଲାନାହିଁ । ତେଣୁ ସେ ଦୁହେଁ ଜୋତାରୁ ବାହାରିପଡ଼ି ଘରମୁହାଁ ଚାଲିଲେ । ସେମାନେ ରାସ୍ତାରେ ଘୁଷୁଡ଼ି ଘୁଷୁଡ଼ି ଯାଉଥିବାର ଲୋକମାନେ ଦେଖିଲେ ଓ ତାଙ୍କୁ ଧରିବାକୁ ଚେଷ୍ଟାକଲେ । କେହି ଅବଶ୍ୟ ତାଙ୍କୁ ଧରିପାରିଲେ ନାହିଁ, କିନ୍ତୁ ଫିତାକୁ ଗୋଡ଼ାଉ ଗୋଡ଼ାଉ ସେମାନେ ଶ୍ରୀ ମ୍ୟାକ୍‌ଫାରଲାନ୍‌ସଙ୍କ ବଗିଚାର ସବୁ ଫୁଲ ଗଛ ଦଳିଚକଟି ପକାଇଲେ । ଯେତେବେଳେ ଫିତାଗୁଡ଼ିକ ଘରେ ପଶିଗଲେ, ରାନ୍ଧୁଣିଆ ତାକୁ ସାପ ବୋଲି ଭାବି ପାଟି କଲା ଓ ଚାକିରି ଛାଡ଼ିଦେବାକୁ ବାହାରିଲା । ତେଣୁ ମୁଁ ଯେ କେବେ କେବେ ଛିଣ୍ଡୁଥିବା ସାଧାରଣ ଜୋତାଫିତାକୁ ବେଶୀ ପସନ୍ଦ କରେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନ ଥିଲା ।

ମୁଁ ତେଣୁ ମିସ୍ ୱାଣ୍ଡଲଙ୍କୁ ବହୁତ ଧନ୍ୟବାଦ ଦେଲି ଓ ମୋର ବେକ ବୋତାମଟି ନେଇ ବାହାରି ଆସିଲି ।

## ବିଜ୍ଞାନ ପ୍ରସାରର ଅନ୍ୟ ବହି

*ଇଂରାଜୀ ଓ ହିନ୍ଦୀ*

| | |
|---|---|
| ୧· ଲିଫ୍ ଜୁ | ୨୦·୦୦ |
| ୨· ପମ୍ପସ୍ ଫ୍ରମ୍ ଦି ଡମ୍ପ | ୨୦·୦୦ |
| ୩· ଟୟ ଜୟ | ୨୦·୦୦ |
| ୪· ଲେଟ୍ସ୍ ପୁଟ୍ ଥିଙ୍ଗ୍ସ୍ ଟୁଗେଦର | ୨୫·୦୦ |
| ୫· ଜାନୋ ଔର ବୁଝୋ | ୫·୦୦ |
| ୬· ଦେଖା ପରଖା ସଚ୍ | ୪୫·୦୦ |
| ୭· ଲେଟ୍ସ୍ ସିଙ୍ଗ୍ ଆଣ୍ଡ ପ୍ଲେ | ୧୦·୦୦ |
| ୮· ମେମୋୟରସ୍ ଅଫ୍ ରୁଚିରାମ ସାହଣୀ | ୬୦·୦୦ |
| ୯· ଦି କେମିକାଲ ହିଷ୍ଟ୍ରି ଅଫ୍ ଏ କାଣ୍ଡଲ | ୩୫·୦୦ |
| ୧୦· ସୋପ୍ ବବଲ୍ | ୩୦·୦୦ |
| ୧୧· ମାଇ ଫ୍ରେଣ୍ଡ ମିଃ· ଲିକୀ | ୪୦·୦୦ |
| ୧୨· ଏଭ୍ରିଥିଙ୍ଗ ହାଜ୍ ଏ ହିଷ୍ଟ୍ରି | ୪୫·୦୦ |
| ୧୩· ସେକ୍ସ, ସେକ୍ସୁଆଲି ଟ୍ରାନସ୍‌ମିଟେଡ୍ ଡିଜିଜ୍ | ୬୫·୦୦ |
| ୧୪· ଅଣ୍ଡରଷ୍ଟାଣ୍ଡିଙ୍ଗ୍ ଆସ୍‌ଥମା | ୩୪·୦୦ |
| ୧୫· ନୋ ମୋର୍ ଏବାଉଟ୍ ଜଣ୍ଡିସ୍ | ୩୧·୦୦ |
| ୧୬· ସିଇଙ୍ଗ୍ ଇଜ୍ ନଟ୍ ଅଲ୍‌ୱେଜ୍ ବିଲିଭିଙ୍ଗ୍ | ୬୫·୦୦ |
| ୧୭· କ୍ୟୁଁ ଔର୍ କୈସେ | ୧୪୯·୦୦ |
| ୧୮· ପରମାଣୁ ସେ ସିତାରୋଁ ତକ୍ | ୯୯·୦୦ |
| ୧୯· ଗେଟିଙ୍ଗ୍ ଷ୍ଟାର୍ଟେଡ୍ ଇନ୍ ସ୍କାଇ ୱାଚିଙ୍ଗ୍ | ୨୫·୦୦ |

*ଓଡ଼ିଆ*

| | |
|---|---|
| ୨୦· ଆପଣଙ୍କ ସବୁ ପ୍ରଶ୍ନର ଉତ୍ତର | ୧୨·୦୦ |
| ୨୧· ମୋ ବନ୍ଧୁ ଶ୍ରୀ ଲିକୀ | ୪୦·୦୦ |

*ବହିଗୁଡ଼ିକ ବିଜ୍ଞାନ ପ୍ରସାର ଏବଂ ସୃଜନିକାଠାରୁ ମିଳିପାରିବ ।*

**ବିଜ୍ଞାନ ପ୍ରସାର**
ସି–୨୪, କୁତବ୍ ଇନ୍‌ଷ୍ଟିଚୁସନାଲ୍ ଏରିଆ
ନୂଆଦିଲ୍ଲୀ ୧୧୦୦୧୬

**ସୃଜନିକା**
ଜାଗମରା, ଡାକ: ଖଣ୍ଡଗିରି
ଭୁବନେଶ୍ୱର ୭୫୧୦୩୦

